# ଜଗନ୍ନାଥ ପ୍ରସାଦ : ସୃଜନ ଯାତ୍ରା



ଗଣେଶ୍ୱର ମିଶ୍ର



ଜଗନ୍ନାଥ ପ୍ରସାଦ : ସୃଜନ ଯାତ୍ରା
ଗଣେଶ୍ୱର ମିଶ୍ର

ପ୍ରଚ୍ଛଦ ଓ ଅଳଙ୍କରଣ : ନିତ୍ୟାନନ୍ଦ ମିଶ୍ର

ପ୍ରଥମ ପ୍ରକାଶନ ୨୦୧୦

ପ୍ରକାଶକ : ବିଦ୍ୟାପୁରୀ, ବାଲୁବଜାର, କଟକ ୭୫୩୦୦୨

ମୁଦ୍ରଣ : ଗ୍ରାଫ୍‌ଟେକ୍ ପ୍ରା. ଲି., ଭୁବନେଶ୍ୱର ୭୫୧୦୧୮

ମୂଲ୍ୟ : ୨୦୦ ଟଙ୍କା

ISBN : 978-81-7411-785-4

Jagannath Prasad : Srujan Jatra
Ganeswar Mishra

Published by
Vidyapuri
Balu Bazar, Cuttack 753002
www.vidyapuri.com

Price : Rs. 200.00

# ଏ ପୁସ୍ତକ ମୁଁ କାହିଁକି ଲେଖିଲି, କିପରି ଲେଖିଲି

ସାଂପ୍ରତିକ ଓଡ଼ିଶାର ତଥା ଭାରତର ସାହିତ୍ୟ ଓ କଳା ସମାଲୋଚନା କ୍ଷେତ୍ରରେ ଜଗନ୍ନାଥ ପ୍ରସାଦ ଦାସ (ଜେ.ପି. ଦାସ, ଜେ.ପି.) ଏକ ପ୍ରମୁଖ ବ୍ୟକ୍ତିତ୍ୱ । ୨୦୦୫ରେ ତାଙ୍କର ଜୀବନ ଓ କୃତି ସଂପର୍କରେ ଇଂରାଜୀରେ ମୁଁ ଏକ ପୁସ୍ତକ ସଂପାଦନା କରିଥିଲି – 'ୱାର୍ଡ୍‌ସ୍ ଅନ୍ କ୍ୟାନ୍‌ଭାସ୍ : ଜେ.ପି. ଦାସ ଆଣ୍ଡ୍ ହିଜ୍ ୱାର୍କ' । ଓଡ଼ିଶା ଲଳିତକଳା ଏକାଡେମୀର ତତ୍କାଳୀନ ସଭାପତି ଦିନନାଥ ପାଠୀଙ୍କ ପ୍ରେରଣା ଓ ପ୍ରଚେଷ୍ଟାରେ ଏକାଡେମୀ ଓ ଦିଲ୍ଲୀର ହର୍‌ମ୍ୟାନ୍ ପବ୍ଲିଶିଂ ହାଉସ୍ ଏହା ପ୍ରକାଶ କରିଥିଲେ । ଏ ପୁସ୍ତକ ବିଭିନ୍ନ ଶ୍ରେଣୀର ପାଠକଙ୍କ ଦ୍ୱାରା ଆଦୃତ ହୋଇଥିଲା ।

ଜଗନ୍ନାଥ ପ୍ରସାଦଙ୍କ ସଂପର୍କରେ ଓଡ଼ିଆରେ ପୁସ୍ତକଟିଏ ପ୍ରଣୟନ କରିବାକୁ କେହି କେହି ପ୍ରସ୍ତାବ ଦେଲେ । ପରିଣତି – 'ଜଗନ୍ନାଥ ପ୍ରସାଦ : ସୃଜନ ଯାତ୍ରା' ।

ମୂଳରୁ କହି ରଖେ – ଏ ପୁସ୍ତକ ଜଗନ୍ନାଥ ପ୍ରସାଦଙ୍କ କୃତିର ଗଭୀର ଆକଳନ ନୁହେଁ, ତଥ୍ୟଭିତ୍ତିକ ଜୀବନୀ ମଧ୍ୟ ନୁହେଁ, ତାଙ୍କର ଜୀବନ ଓ କୃତି ମଧ୍ୟରେ ନିହିତ ସଂପର୍କର ଏକ ସୂଚନା ମାତ୍ର । ଏ ପୁସ୍ତକର ଲେଖକ ମୁଁ – କିନ୍ତୁ କେବଳ ମୁଁ ନୁହେଁ । ଜଗନ୍ନାଥ ପ୍ରସାଦଙ୍କ ସଂପର୍କରେ ତାଙ୍କର ପିତା, ଶିକ୍ଷକ, ପ୍ରବୀଣ ଓ ତରୁଣ ବଂଧୁମାନଙ୍କ ଲିଖିତ ବା ବାଚନିକ ଆଲୋଚନା/ସଂସ୍ମରଣର ଅଂଶବିଶେଷ ଏଥିରେ ଲିପିବଦ୍ଧ ହୋଇଛି; ସମସ୍ତଙ୍କ ମିଳିତ ଉଦ୍ୟମ ଏ ପୁସ୍ତକ ! ତେବେ, ଏ ପୁସ୍ତକ ରଚନାରେ ସବୁଠାରୁ ଅଧିକ ସହଯୋଗ କରିଛନ୍ତି ନିଜେ ଜଗନ୍ନାଥ ପ୍ରସାଦ । ତାଙ୍କ ସୃଷ୍ଟିଶୀଳ ସତ୍ତା ଏ ପୁସ୍ତକର ମୂଳ ବିଷୟବସ୍ତୁ । ସେ ସଂପର୍କରେ ଯେତେବେଳେ ମୁଁ ଯେଉଁ ତଥ୍ୟ ଚାହିଁଛି, ତାହା ସେ ନିଃସଙ୍କୋଚରେ ମୋତେ ଯୋଗାଇ ଦେଇଛନ୍ତି । ଅବଶ୍ୟ ଗୋଟିଏ ସର୍ତ୍ତରେ – ମୁଁ ତାଙ୍କ ସଂପର୍କରେ ଯାହା ଲେଖିବି, ତାହା ତାଙ୍କର ଗ୍ରହଣୀୟ ହେଉ ବା ନ ହେଉ, ସେଥିପ୍ରତି ସେ ନିରାସକ୍ତ ରହିବେ । ମୋର ସୌଭାଗ୍ୟ, ଏ ସର୍ତ୍ତ ସେ ଆନନ୍ଦରେ ଗ୍ରହଣ କରିଛନ୍ତି ।




ଜଗନ୍ନାଥ ପ୍ରସାଦ, ଗଣେଶ୍ୱର ମିଶ୍ର, ଗୌର କିଶୋର ଦାସ, ଏବେର୍‌ହାର୍ଡ଼୍ ଫିସର, ଦିନନାଥ ପାଠୀ



ଏ ପୁସ୍ତକର ପାଣ୍ଡୁଲିପି ପ୍ରସ୍ତୁତିରେ ମୋତେ ସାହାଯ୍ୟ କରିଛନ୍ତି ଅଧ୍ୟାପକ ଅରବିନ୍ଦ ପରିଡ଼ା । ତାଙ୍କୁ ମୋର ଧନ୍ୟବାଦ ଓ ଶୁଭେଚ୍ଛା ଜଣାଉଛି ।

ଆମ ମଧ୍ୟରେ ଚଳପ୍ରଚଳ ହେଉଥିବା, ସାଧନାରେ ବ୍ୟାପୃତ ରହିଥିବା କୌଣସି ବ୍ୟକ୍ତିଙ୍କ ଜୀବନ ଓ କୃତି ସଂପର୍କରେ ଆଲୋଚନାର ପରଂପରା କ୍ଷୀଣ । ଅବଶ୍ୟ ଅଭିନନ୍ଦନ ଗ୍ରନ୍ଥର ପ୍ରକାଶନ ଦୁର୍ଲଭ ନୁହେଁ । ମୋର ଏ ପୁସ୍ତକ କେବଳ ଜଗନ୍ନାଥ ପ୍ରସାଦଙ୍କ ସଂପର୍କରେ ନୁହେଁ, ଆମ ସମୟର ଓଡ଼ିଆ ସାହିତ୍ୟ ଓ ସାଂସ୍କୃତିକ ବାତାବରଣ ସଂପର୍କରେ କିଞ୍ଚିତ୍ ପରିଚୟ ପ୍ରଦାନ କରିବ ବୋଲି ମୁଁ ଆଶା କରେ ।

**ଗଣେଶ୍ୱର ମିଶ୍ର**

# ସୂଚୀ

# ଅଫେରନ୍ତା ଗାଁ



୨୦୦୩

**୨**୦୦୩ ମସିହା ଅକ୍ଟୋବର ମାସର କୌଣସି ଏକ ସକାଳରେ ବାଣପୁର ଅଭିମୁଖେ ବାହାରିଥିଲୁ ଜଗନ୍ନାଥ ପ୍ରସାଦ ଦାସ ଓ ମୁଁ । ପୂର୍ବଦିନ ସେ ଦିଲ୍ଲୀରୁ ଆସି ଭୁବନେଶ୍ୱରରେ ପହଞ୍ଚିଥିଲେ ଖାସ୍ ବାଣପୁର ଯିବାପାଇଁ । ବାଣପୁରର ନେହେରୁ ସେବା ସଂଘର ବାର୍ଷିକ ଉତ୍ସବରେ ଯୋଗ ଦେବାପାଇଁ ତାଙ୍କୁ ନିମନ୍ତ୍ରଣ କରାଯାଇଥିଲା । ମୋତେ ସାଥିରେ ନେବାପାଇଁ ସେ ଚାହିଁଲେ । ତାଙ୍କ ସହିତ କିଛି ସମୟ କଟାଇବାର ସୁଯୋଗ ହରାଇବାକୁ ମୁଁ ଚାହୁଁ ନ ଥିଲି ।

୧୯୮୪ରେ ଆଇ.ଏ.ଏସ୍. ଚାକିରିରୁ ଇସ୍ତଫା ଦେବା ପରେ ସେ ଦିଲ୍ଲୀରେ ହିଁ ରହନ୍ତି । ଜରୁରୀ କାମ ନ ପଡ଼ିଲେ ଦିଲ୍ଲୀରୁ ଭୁବନେଶ୍ୱର ଆସିବାର କାରଣ ନାହିଁ । ନେହେରୁ ସେବା ସଂଘ ଅନୁଷ୍ଠାନର ନିମନ୍ତ୍ରଣରେ ତାଙ୍କ ଭଳି କର୍ମବ୍ୟସ୍ତ ବ୍ୟକ୍ତି ଯୋଗ ଦେଉଥିବାର କାରଣଟି ପ୍ରଥମେ ବୁଝିପାରି ନ ଥିଲି ।

ସେତେବେଳେ ତାଙ୍କ ବୟସ ସତଷଠୀ । ଦୀର୍ଘ, ସମ୍ଭ୍ରାନ୍ତ, ସୌମ୍ୟଦର୍ଶନ ଚେହେରା; ଆପାତତଃ ସ୍ୱାସ୍ଥ୍ୟଗତ ସମସ୍ୟା କିଛି ନ ଥିଲା । କିନ୍ତୁ କ୍ରମାଗତ ବହୁ ସମୟ କାର୍‌ରେ ଯାତ୍ରା କରିବା ପାଇଁ ଡାକ୍ତରଙ୍କର ତାଙ୍କୁ ବାରଣ ଥିଲା । ଟ୍ରେନ୍‌ରେ ବାଣପୁର ଯିବା ସମ୍ଭବ ହୋଇଥାନ୍ତା । କିନ୍ତୁ ଟ୍ରେନ୍ ଠିକ୍ ସମୟରେ ଗନ୍ତବ୍ୟସ୍ଥଳରେ ପହଞ୍ଚିବାର କି ନିଶ୍ଚିତତା ଅଛି ? ସମୟାନୁବର୍ତ୍ତିତା ତାଙ୍କ ଚରିତ୍ରର ଏକ ବିଶେଷ ଗୁଣ । ତେଣୁ ଆମେ କାର୍‌ରେ ଯାତ୍ରା କଲୁ । ରାସ୍ତା ସାରା ଧୂଳି; ସ୍ଥାନେ ସ୍ଥାନେ ରାସ୍ତା କଟା ହୋଇ ମରାମତି ଚାଲିଥାଏ । ସେ କିନ୍ତୁ ଯାତ୍ରାକୁ ଉପଭୋଗ କରୁଥାନ୍ତି ବେଶ୍ ।

ଏହି ବାଣପୁର ଯାତ୍ରା ଉପଭୋଗ କରିବାର କାରଣଟିଏ ଥିଲା ତାଙ୍କର । ୧୯୩୬ରେ ସେ ବାଣପୁରରେ ହିଁ ଜନ୍ମଗ୍ରହଣ କରିଥିଲେ । ଜନ୍ମର ସନ୍ତକ ଛାତକଟି ଅଦ୍ୟାବଧି ସେ ଯତ୍ନରେ ସାଇତି ରଖିଛନ୍ତି । ସେହିଠାରେ ଲାଭ କରିଥିଲେ ପ୍ରାଥମିକ ଶିକ୍ଷା । ତାଙ୍କପାଇଁ ସ୍ମୃତି ଓ ସ୍ୱପ୍ନର ସହର ଥିଲା ବାଣପୁର । ତାଙ୍କ ଶୈଶବରେ ଅବଶ୍ୟ ବାଣପୁର ସହରଟିଏ ହୋଇ ନ ଥିବ, ଥିବ ଗୋଟିଏ ବଡ଼ ଗାଁ ।

ଚଣେଶ୍ୱର ମିଶ୍ରଙ୍କ ସହିତ ବାଣପୁରରେ
୨୬.୧୦.୨୦୦୩



ଜଗନ୍ନାଥ ପ୍ରସାଦଙ୍କ ଜନ୍ମ ସଂପର୍କରେ ତାଙ୍କର ପିତା ଶ୍ରୀଧର ଦାସ ନିଜ ଆତ୍ମଜୀବନୀରେ ଲେଖିଛନ୍ତି :

'ଏଥିପୂର୍ବରୁ କହିଅଛି ଯେ, ମୋର ବଉଦ ଅବସ୍ଥାନ କାଳରେ ଜନ୍ମିଥିବା ପୁତ୍ରଟି ଡିପ୍‌ଥେରିଆ ରୋଗରେ ଅକାଳରେ ମୃତ୍ୟୁମୁଖରେ ପଡ଼ିଥିଲା । ଏହାପରେ ୧୯୩୬ ମସିହାରେ ବାଣପୁରଠାରେ ମୋର ଏକ ପୁତ୍ର ଜନ୍ମଲାଭ କଲା । ଜଗନ୍ନାଥଙ୍କ ପ୍ରସାଦରୁ ପାଇଥିବାରୁ ତାହାର ନାମ ଦେଇଥିଲି ଜଗନ୍ନାଥ ପ୍ରସାଦ ।

ପ୍ରାୟ ୪ବର୍ଷ ବେଳକୁ ସେ ଶିକ୍ଷା ଆରମ୍ଭ କରିଥିଲା ବୋଲି କୁହାଯାଇପାରେ । ବିଧିବଦ୍ଧ ଶିକ୍ଷା ନ ଥିଲେ ହେଁ ସେ ଅନେକ ବିଷୟ ଜାଣିପାରିଥିଲା । ସାଧାରଣ ପିଲାଙ୍କ ଅପେକ୍ଷା ତା'ର ବୁଦ୍ଧି ପ୍ରଖର ଥିଲା ଓ ସ୍ମରଣ ଶକ୍ତି ପ୍ରବଳ ଥିଲା । ଘରେ ପଢ଼ାଇବା ପାଇଁ ଜଣେ ପୁରୁଣାକାଳିଆ ଶିକ୍ଷକ ନିଯୁକ୍ତ ଥିଲେ । ପ୍ରାୟ ୭ବର୍ଷ ବେଳକୁ ସେ ହାଇସ୍କୁଲ୍‌ର ଚତୁର୍ଥ ଶ୍ରେଣୀରେ ଯୋଗ ଦେଲା ଓ ସହଜରେ ଶ୍ରେଣୀରେ ଉଚ୍ଚ ସ୍ଥାନ ଅଧିକାର କଲା । ଏଥିମଧ୍ୟରେ ମୁଁ ନାନା ସ୍ଥାନରେ ବୁଲି ଶେଷରେ କଟକରେ ରହିଲି । ତା'ର ଦଶମ ଶ୍ରେଣୀ ହେଲା ବେଳକୁ ତାକୁ କଟକ ଅଣାଇ ମିସନ୍ ହାଇସ୍କୁଲ୍‌ରେ ଭର୍ତ୍ତି କରିଦେଲି ।' (ସ୍ୱଅ ମୁହଁର ପଡର, ୧୯୮୨)

ଶ୍ରୀଧର ଦାସ ୧୯୩୫-୪୨ରେ ଥିଲେ ବାଣପୁର ହାଇସ୍କୁଲ୍‌ର ଶିକ୍ଷକ । ଅନ୍ୟ କେତେକ ସ୍କୁଲ୍‌ରେ ଶିକ୍ଷକତା ପରେ କଟକର ଉତ୍କଳ ଖ୍ରୀଷ୍ଟିଆନ୍ କଲେଜ୍ (ଖ୍ରୀଏଷ୍ଟ କଲେଜ୍)ରେ ଓଡ଼ିଆ ସାହିତ୍ୟର ଅଧ୍ୟାପକ ହେଲେ ପ୍ରାୟ କୋଡ଼ିଏ ବର୍ଷ । ଅଧ୍ୟାପକଭାବରେ ତାଙ୍କର ଖ୍ୟାତି ରହିଛି ନିଶ୍ଚୟ । କିନ୍ତୁ ତା'ଠାରୁ ଅଧିକ ଖ୍ୟାତି ଜଣେ ଲେଖକଭାବରେ । ସମାଲୋଚନା, ଅଭିଧାନ, ବ୍ୟାକରଣ, ପାଠ୍ୟପୁସ୍ତକ,

ଜଗନ୍ନାଥ ପ୍ରସାଦଙ୍କ ଜାତକ



ଅନୁବାଦ, ଜୀବନୀ, ଆତ୍ମଜୀବନୀ – ତାଙ୍କ ପ୍ରଣୀତ ଗ୍ରନ୍ଥର ସଂଖ୍ୟା ଏକ ଶହ କୋଡ଼ିଏରୁ ଅଧିକ । ଏଇଥିରୁ ହିଁ ଅନୁମାନ କରାଯାଇପାରେ ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରତି ତାଙ୍କର ନିଷ୍ଠା, ଅଧ୍ୟବସାୟ, ପ୍ରତିବଦ୍ଧତା । ଶୃଙ୍ଖଳାବଦ୍ଧ ନିୟମିତ ଜୀବନଯାପନ ବ୍ୟତିରେକେ ହୁଏତ ଏଭଳି ବିପୁଳ ସାହିତ୍ୟକୃତି ସମ୍ଭବ ହୋଇ ନ ଥାନ୍ତା ।

ଜଗନ୍ନାଥ ପ୍ରସାଦଙ୍କ ଉପରେ ବାପାଙ୍କ ପ୍ରଭାବ ସ୍ପଷ୍ଟ । ଏ ସଂପର୍କରେ ଜଗନ୍ନାଥ ପ୍ରସାଦ କହନ୍ତି :

'ଆମ ଘରେ ଅନେକ ବହି ଓ ପୁରୁଣା ପତ୍ର-ପତ୍ରିକା ଥିଲା । ତା' ବ୍ୟତୀତ ଆମ ଘରକୁ ଅନେକ ଲେଖକ ଆସୁଥିଲେ ଏବଂ ସବୁବେଳେ ଏକ ସାହିତ୍ୟିକ ବାତାବରଣ ରହୁଥିଲା । ବୋଧହୁଏ ଏହାଦ୍ୱାରା ମୁଁ ସାହିତ୍ୟ ଆଡ଼କୁ ଆକର୍ଷିତ ହୋଇଥିଲି ।' (ନବରବି, ପୂଜା ସଂଖ୍ୟା, ୨୦୦୧)

ଜୀବନର ପ୍ରେରଣା ଓ ପୃଷ୍ଠଭୂମି ନିଶ୍ଚୟ ଥିଲେ ତାଙ୍କର ବାପା । ବାପାଙ୍କ ଭଳି ନିୟମିତ ଶୃଙ୍ଖଳିତ ଜୀବନଚର୍ଯ୍ୟା ଓ ନୀରବ ସାଧନାର ପରିଣତି ଜଗନ୍ନାଥ ପ୍ରସାଦଙ୍କର ବିପୁଳ ସାରସ୍ୱତ କୃତି । ସେ କିନ୍ତୁ କେତେକ କ୍ଷେତ୍ରରେ ବାପାଙ୍କଠାରୁ

ଭିନ୍ନ ମନେ ହୁଅନ୍ତି । ଜଗନ୍ନାଥଙ୍କ କରୁଣାରୁ ତାଙ୍କର ଜନ୍ମ ବୋଲି ପିତା ବିଶ୍ୱାସ କରୁଥିବାବେଳେ ପୁତ୍ର କୌଣସି ମନ୍ଦିର ବା ଧର୍ମାନୁଷ୍ଠାନ ପ୍ରତି କେବେ ଆନୁଗତ୍ୟ ବା ଆସକ୍ତି ପ୍ରକାଶ କରନ୍ତି ନାହିଁ । ପିତାଙ୍କ ପ୍ରତି ତାଙ୍କର ସମ୍ମାନ ଅବଶ୍ୟ କମ୍ ନୁହେଁ । କଟକର ଉତ୍କଳ ସାହିତ୍ୟ ସମାଜ ପ୍ରାଙ୍ଗଣରେ ଭାଇ ଭଉଣୀଙ୍କ ସହିତ ମିଶି ନିର୍ମାଣ କରାଇଛନ୍ତି ଶ୍ରୀଧର ଦାସ ସ୍ମୃତି ପାଠାଗାର । ପୁଣି ୧୯୯୫ରୁ ଉତ୍କଳ ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ଶ୍ରୀଧର ଦାସ ବକ୍ତୃତାମାଳା ଆୟୋଜନ ପାଇଁ ଯୋଗାଇ ଦେଇଛନ୍ତି ଆବଶ୍ୟକୀୟ ସହାୟତା ।


୧୯୪୨

୧୯୪୬ରେ ବାଣପୁର ନେହେରୁ ସେବା ସଂଘ ପ୍ରତିଷ୍ଠା କରିଥିଲେ ହରିହର ରାମ, ତାଙ୍କ ବଡ଼ଭାଇ ବୈଦ୍ୟନାଥ ରାମ ଓ ଜଗନ୍ନାଥ ପ୍ରସାଦ ଦାସ । ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କୁ ସଭାପତି ଆସନରେ ବସାଇ ପିଲାମାନେ ଗାଁ ସଫେଇଠାରୁ ଆରମ୍ଭ କରି ବିଭିନ୍ନ ଅନ୍ଧବିଶ୍ୱାସ ବିରୁଦ୍ଧରେ ଜନସାଧାରଣଙ୍କୁ ସଚେତନ କରାଇବାରେ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲେ । ସେତେବେଳେ ସେମାନଙ୍କ ବୟସ ଥିଲା ଦଶ କି ବାର ।

ବର୍ତ୍ତମାନ ନେହେରୁ ସେବା ସଂଘ ଏକ ବୃହତ୍ ଅନୁଷ୍ଠାନ । ଏହା ମାଧ୍ୟମରେ ବହୁ ଦରିଦ୍ର, ଅନାଥ, ବଧିର ଓ ହରିଜନ ତଥା ଆଦିବାସୀ ଶିଶୁ ଉପକୃତ ହୋଇଛନ୍ତି । ସେମାନଙ୍କୁ ଆଶ୍ରୟ ପ୍ରଦାନ କରିବା, ଉପଯୁକ୍ତ ଶିକ୍ଷା ଓ ତାଲିମ୍ ଯୋଗାଇ ଦେଇ ସୁନାଗରିକରେ ପରିଣତ କରିବା ପାଇଁ ଏହା ଉଦ୍ୟମ କରିଆସିଛି । ଏହାର ସୁବର୍ଣ୍ଣ ଜୟନ୍ତୀ ପାଳିତ ହୋଇଥିଲା ୧୯୯୬ରେ ।

ହରିହର ଥିଲେ ବାଣପୁରରେ ଜଗନ୍ନାଥ ପ୍ରସାଦଙ୍କର ବାଲ୍ୟବଂଧୁ ଓ ସହପାଠୀ । ଦୁର୍ଭାଗ୍ୟର କଥା, ୨୦୦୨ରେ ହରିହରଙ୍କର ପରଲୋକ ହୋଇଯାଇଥିଲା । ବାଣପୁରରେ ପହଞ୍ଚିବା ଯାଏଁ ମୁଁ ଜାଣି ନ ଥିଲି – ପ୍ରଥମ ବାର୍ଷିକୀ ଶ୍ରାଦ୍ଧ ଉପଲକ୍ଷେ ହରିହରଙ୍କର ପ୍ରତିମୂର୍ତ୍ତିଟିଏ ନିର୍ମିତ ହୋଇଛି ନେହେରୁ ସେବା ସଂଘ ପରିସରରେ । ଜଗନ୍ନାଥ ପ୍ରସାଦ ନିଜେ ତାହା ଉନ୍ମୋଚନ କରିବେ । ସେ ନିଜେ ମଧ୍ୟ ଏହା ଜାଣିଥିଲେ ବୋଲି ମୋର ମନେ ହେଉ ନ ଥିଲା ।

ଜଗନ୍ନାଥ ପ୍ରସାଦଙ୍କର ବାଣପୁର ସହିତ ଯୋଗସୂତ୍ର ରକ୍ଷା କରିବାର ଅନ୍ୟତମ କାରଣ ଥିଲେ ହରିହର ରାମ ଓ ତାଙ୍କ ପ୍ରତିଷ୍ଠିତ ଅନୁଷ୍ଠାନ । ଉଭୟଙ୍କ ମଧ୍ୟରେ ନିୟମିତ ପତ୍ର ବିନିମୟ ହେଉଥିଲା । ଜଗନ୍ନାଥ ପ୍ରସାଦ ଥିଲେ ନେହେରୁ ସେବା ସଂଘର ଅନ୍ୟତମ ପୃଷ୍ଠପୋଷକ ଏବଂ ସାଧ୍ୟମତେ ଆର୍ଥିକ ଓ ଅନ୍ୟାନ୍ୟ ସହାୟତା ଯୋଗାଇ ଦେଉଥିଲେ । ସେ ସଂପର୍କରେ ପ୍ରାୟ ସେ କାହାରିକୁ କହୁ ନ ଥିଲେ ।

ହରିହରଙ୍କ ଲିଖିତ କେତୋଟି ପତ୍ରରୁ ମୁଁ ତାହାର ସୂଚନା ପାଇଥିଲି ମାତ୍ର । ଏଠାରେ ତିନୋଟି ପତ୍ରର କେତେକାଂଶ ଉଦ୍ଧାର କରାଯାଉଛି :

୧

ପ୍ରିୟ ଜଗନ୍ନାଥ ବାବୁ,

ଅଭିନନ୍ଦନ ନେବେ । ଏ ମଧ୍ୟରେ ୨ଖଣ୍ଡ ପତ୍ର ଦେଲିଣି । ଉତ୍ତର ନ ପାଇବାରୁ ବିଶେଷ ଚିନ୍ତିତ । କାମ ଟିକିଏ ବଳେଇ ପଡ଼ିଲାରୁ ବୋଧହୁଏ ଅସୁବିଧା ହୋଇଥାଇପାରେ ଉତ୍ତର ଦେବାକୁ ।

ଆଗାମୀ ୨୦ତାରିଖ (୨୦.୯.୮୩)ରେ ନେହେରୁ ସେବା ସଂଘର ବାର୍ଷିକ ସାଧାରଣ ଅଧିବେଶନ ବାଣପୁରଠାରେ ହେବ । ଏଥିସହ ସାଧାରଣ ଚିଠି ପଠାଇଲି । ଏହା ସହ ମୋର ସ୍ୱତନ୍ତ୍ର ଅନୁରୋଧଟି ଟିକିଏ ନିଶ୍ଚୟ ରକ୍ଷା କରିବେ । ସଂଘର ପ୍ରତ୍ୟେକ ସଦସ୍ୟଙ୍କ ଅନୁରୋଧକ୍ରମେ ମୁଁ ଲେଖୁଛି ।

... ସବୁଠାରୁ ବିଶେଷ ଅନୁରୋଧ ହେଲା – ଚଳିତ ବର୍ଷ ଅଧିବେଶନରେ ଆପଣ ସଭାପତିତ୍ୱ କରିବା ସହ, ନେହେରୁ ସେବା ସଂଘର ସଭାପତି ହେବାକୁ ରାଜି ହେବା ପାଇଁ ଅନୁରୋଧ କରିବାକୁ ମୋତେ ସମସ୍ତେ ଅନୁରୋଧ କରିଛନ୍ତି । ନେହେରୁ ସେବା ସଂଘ ବିଭିନ୍ନ କ୍ଷେତ୍ରରେ ଯାହା କରିଛି ଓ ଯାହା କରୁଛି, ସେଥିରେ ଆପଣ ସଭାପତି ହେବା ପାଇଁ ଏହା ଏକ ଯୋଗ୍ୟ ଅନୁଷ୍ଠାନ ଓ ଆପଣ ସଭାପତି ହେଲେ ଖୁସି ହେବେ ।

ବାପା, ଭଉଣୀ ଓ ସାନ ଭାଇ ସହିତ (୧୯୪୨)



ଜଣେ ସାଥି ଭାବରେ, ନିରବଚ୍ଛିନ୍ନ ଭାବରେ (ଆପଣଙ୍କ ସଂଗଠିତ ଅନୁଷ୍ଠାନର) ଜଣେ କର୍ମୀ ଭାବରେ ମୋର ଏ ଅନୁରୋଧକୁ ଆପଣ ଅଗ୍ରାହ୍ୟ କରିବେ ନାହିଁ ।

ମୋର ବାରମ୍ବାର ଅନୁରୋଧ – ଉତ୍ତର ଯେପରି ଶୀଘ୍ର ମିଳେ । ଏହା ଯେପରି ନାସ୍ତିସୂଚକ ନ ହେବ ।

ସ୍ନେହର ହରିହର
ନେହେରୁ ସେବା ସଂଘ
ବାଣପୁର

୨


ମହାବାତ୍ୟା ପରେ ବଳବୀର ମାଥୁରଙ୍କ ସହ (୨୦୦୦)

୧୫.୧୧.୨୦୦୦

ପ୍ରିୟ ଜଗନ୍ନାଥ ବାବୁ,

ପ୍ରଣାମ । ୮ ତାରିଖ ଦିନ ଆପଣ ଶ୍ରୀଯୁକ୍ତ ବଲବୀର ମାଥୁରଙ୍କ ସହ ନେହେରୁ ସେବା ସଂଘ ପରିଦର୍ଶନ କରିବାରେ ଯେଉଁ କୃପା କଲେ ତାହା ଅଭୁଲା ରହିବ । ଏ ପରିଦର୍ଶନରେ ମୁଁ ଏତେ ଭାବବିହ୍ୱଳ ହୋଇଯାଇଛି ଯେ, ତାହା ବର୍ଣ୍ଣନା କରିବାକୁ ଭାଷା ପାଉ ନାହିଁ । ଦୀର୍ଘଦିନର ହଜିଲା ଦିନଗୁଡ଼ିକ ଫେରି ପାଇଲା ପରି ଲାଗୁଛି । ଦରିଦ୍ର କୋଟିନିଧି ପାଇଲା ପରି ଲାଗୁଛି । ଏହିପରି ଯେ କୌଣସି କାରଣରୁ ଆପଣ ଓଡ଼ିଶା ଆସିବାକୁ ହେଲେ, ମୋତେ ଜଣାଇଲେ ମୁଁ ଆପଣଙ୍କ ନିକଟକୁ ଯାଇ ଦେଖାକରି ଆସନ୍ତି । ସରିଯାଉଥିବା ଏକୁଟିଆ ଜୀବନର ଅବଶିଷ୍ଟ ଦିନଗୁଡ଼ିକରେ ଆପଣଙ୍କ ପରି ବନ୍ଧୁ ହିଁ ଏକମାତ୍ର ସାହା ଭରସା ।

ସ୍ନେହାଧୀନ ହରିହର

୩

ଜରୁରୀ
୨୯.୭.୨୦୦୧

ପ୍ରିୟ ଜଗନ୍ନାଥ ବାବୁ,

ପ୍ରଣାମ ନେବେ । ଶ୍ରୀଯୁକ୍ତ ବଲବୀର ମାଥୁରଙ୍କ ସହ ଟେଲିଫୋନ୍‌ରେ କଥାବାର୍ତ୍ତା ହୋଇଥିଲା । ଏଠାରେ ଚାଲିଥିବା ନଡ଼ିଆଗଛ ରୋପଣ କାର୍ଯ୍ୟକ୍ରମ ବିଷୟରେ ଅବଗତ କରାଇଥିଲି । ଓଡ଼ିଶାରେ ହୋଇଥିବା ଭୟାବହ ବନ୍ୟା ପରିସ୍ଥିତି ବିଷୟରେ ମଧ୍ୟ କହିଥିଲି । ଗୋଟିଏ ଚିଠି ଓ ଆବଶ୍ୟକତା ଥିବା ଦ୍ରବ୍ୟ ସଂପର୍କରେ ବିବରଣୀ ଦେଇ ଫ୍ୟାକ୍ସ କରିବାକୁ ସେ ମୋତେ କହିଥିଲେ । ତାହା ମୁଁ କରିଥିଲି । ସେ ଚିଠିର ନକଲ ଏଥିସହ ଦେଲି । ଆପଣ ତାଙ୍କ ସହ କଥାବାର୍ତ୍ତା ଦୟାକରି କରିବେ ।

ଆପଣଙ୍କ କାରଣରୁ ଆପଣଙ୍କ ଗଠିତ ନେହେରୁ ସେବା ସଂଘ କିଛି କାର୍ଯ୍ୟ କରିବା ପାଇଁ ସଂପୂର୍ଣ୍ଣ ସହଯୋଗ ପାଉଥିବାରୁ ବାରମ୍ବାର କୃତଜ୍ଞତା ଜଣାଉଛି ।

ସ୍ନେହାଧୀନ
ହରିହର ରାମ



ହରିହର ରାମଙ୍କ ପ୍ରତିମୂର୍ତ୍ତି ସମ୍ମୁଖରେ

ସେଦିନ ଜଗନ୍ନାଥ ପ୍ରସାଦ ଦିବଂଗତ ହରିହରଙ୍କ ପ୍ରତିମୂର୍ତ୍ତି ଉନ୍ମୋଚନ କଲେ । ସମବେତ ବାଳକବାଳିକା ତଥା ଉପସ୍ଥିତ ସୁଧୀଜନଙ୍କ ପାଇଁ ଭାଷଣଟିଏ ଦେଲେ । ଭାଷଣରେ ସେ ଉଲ୍ଲେଖ କରିଥିଲେ :

'ଆଜି ମୁଁ ପ୍ରଥମ ଥର ପାଇଁ ଏ ଜାଗାକୁ ଆସିଛି ଯେତେବେଳେ କି ହରିହର ରାମ ଏଠାରେ ନାହାନ୍ତି । ତାଙ୍କ ସହିତ ମୋର ବନ୍ଧୁତା ଷାଠିଏ ବର୍ଷରୁ ଊର୍ଦ୍ଧ୍ୱ ଏବଂ ମୁଁ ତାଙ୍କୁ ସବୁବେଳେ ସମ୍ମାନ ଦେଇ ଆସିଥିଲି । ଏଥିପାଇଁ ଯେ ଆମେ ଅନ୍ୟମାନେ ସଂସାରୀ ହୋଇଯାଇଥିବା ବେଳେ କେବଳ ସେ ହିଁ ସନ୍ୟାସ ନେଇ ଆମମାନଙ୍କର ପିଲାଦିନର ସ୍ୱପ୍ନକୁ ଜୀବିତ ରଖି ଲୋକସେବାରେ ନିଜକୁ ଉତ୍ସର୍ଗ କରି ଦେଇଥିଲେ ।

ଦୀର୍ଘ ବ୍ୟବଧାନରେ ଆମର ଯେତେବେଳେ ବି ଦେଖା ହେଉଥିଲା, ସେ ସେବା ସଂଘ ବିଷୟରେ ଖବର ଦେଉଥିଲେ ଏବଂ ଆଉ କ'ଣ କରାଯାଇପାରିବ, ସେ ବିଷୟରେ ଆଲୋଚନା କରୁଥିଲେ । ଦିଲ୍ଲୀରେ ସେବା ସଂଘର କାମ ପାଇଁ ମୁଁ ଯଥାସାଧ୍ୟ ସାହାଯ୍ୟ କରିବାକୁ ଚେଷ୍ଟା କରୁଥିଲି ।'

ବାଣପୁର ହାଇସ୍କୁଲ୍‌ରେ ଯେଉଁମାନେ ଜଗନ୍ନାଥ ପ୍ରସାଦଙ୍କର ସହପାଠୀ ଥିଲେ ସେମାନଙ୍କ ମଧ୍ୟରୁ କେହି କେହି ଆଉ ଜୀବିତ ନାହାନ୍ତି । ଅନେକଙ୍କ ସହିତ ପରବର୍ତ୍ତୀ ସମୟରେ ସେ ସଂପର୍କ ରକ୍ଷା କରିପାରି ନାହାନ୍ତି । ତାଙ୍କର ବାଣପୁର ଛାଡ଼ିବାର ଷାଠିଏ ବର୍ଷ ହୋଇଗଲାଣି । ଏଭଳି ହେବା ହିଁ ସ୍ୱାଭାବିକ ।

୧୯୪୮



ଅବସରପ୍ରାପ୍ତ ଚିଫ୍ ଇଞ୍ଜିନିୟର ମୁରଲୀଧର ଶତପଥୀ ସେ ସମୟରେ ଥିଲେ ଜଗନ୍ନାଥ ପ୍ରସାଦଙ୍କର ଅନ୍ୟତମ ସହପାଠୀ । ବୃତ୍ତିରେ ଇଞ୍ଜିନିୟର ହେଲେ ମଧ୍ୟ କଳା ଓ ସାହିତ୍ୟରେ ତାଙ୍କର ବେଶ୍ ଆଗ୍ରହ । ଅବସର ପରେ ସେ ଭୁବନେଶ୍ୱରରେ ରହନ୍ତି । ବାଣପୁରରେ ସେଇ ଶୈଶବର ଦିନଗୁଡ଼ିକ ମନେପକାଇ ସେ କହନ୍ତି :

'ଜଗନ୍ନାଥ ପ୍ରସାଦ ଦାସ (ଯାହାକୁ ମୁଁ ପିଲାଦିନୁ 'ଜଗନା' ବୋଲି ଡାକିଆସୁଛି) ମୋର ବାଲ୍ୟବଂଧୁ ।

আমর পরিচয় ১৯৪৩ মসিহারু । বাণপুর হাইস্কুল্‌রে মোর বাপা লক্ষ্মীধর শতপথী ও জগন্নাথর বাপা শ্রীধর দাস শিক্ষক থিলে । আমে পাখাপাখি ঘরে রহুথিলু এবং একা শ্রেণীরে পঢ়ুথিলু । একাঠি পঢ়িবা, একাঠি খেলিবা ও একাঠি বুলিযিবা আমর দৈনন্দিন ধরাবন্ধা রুটিন্‌ ভলি হোইযাইথিলা ।

পিলাদিনরু হিঁ জগন্নাথর প্রতিভা জণাপড়ুথিলা ।'


১৯৫০

জগন্নাথ প্রসাদ তাঙ্ক আত্মজীবনী লেখি নাহান্তি এযাবত্‌ । তাঙ্ক রচিত কবিতা, গল্প, উপন্যাস, নাটকরে বাণপুরর বাহ্যচিত্র প্রতিভাত নুহেঁ – যেপরি গোদাবরীশ মিশ্র বা কৃষ্ণচন্দ্র ত্রিপাঠীঙ্ক কেতেক কবিতারে । কিন্তু জগন্নাথ প্রসাদঙ্ক 'পিলাদিন' কবিতারে সে গ্রাম্য শৈশবকু মনে পকাইবার যেউঁ আভাস দেইছন্তি, তাহা বাণপুর জীবনর স্মৃতি উপরে আধারিত – এপরি বিশ্বাস করিবা স্বাভাবিক । সংপূর্ণ কবিতাটি এহিপরি :

## পিলাদিন

ঘরসবু হাত ধরাধরি হোই
ধাড়ি বান্ধি ঠিআ হোইথিলে
ডাহাণিআ খরা আসি
মেঘ সহিত লুচুকালি খেলুথিলা
খণ্ডিআ ভূত যাই লাগিগলা
কইঁআ গছ ডালরে
ডামরা কাউ শূন নেই উড়ি চালিগলা

খরা হেউছি বর্ষা হেউছি বেলরে
পণিকিআ ডাক হজিগলা
চাটশালীর টুপুর টাপুররে
নানাবায়া গীতর শেষ লহরীরে
গেণ্ডালিআ পর ঝাড়ি উড়িগলা
অরণা মইঁষি ধসি পশি আসিলা
বর্ণবোধ পৃষ্ঠা ভিতরকু
জলছবি উপরকু মাছরঙ্কা ঝাম্পদেলা

সিলট পটা উপরে
জহ্নিফুল ঠো ঠা ফুটিলা
ইটিকিলি মিটিকিলি কাইঁচসবু
বস্তানি ভিতরু ফুটি খসি পড়িলে
অঙ্কা বঙ্কা শগড় গুলারে
চকাচকা ভউঁরী ভিতরে
মামুঘর কাগজ ডঙ্গা বুড়িগলা
গুণ্ডুচিমূষা কাটিনেলা গুড়ির সূতাকু

ତାଳଗଛ ଲମ୍ବା ଲମ୍ବା ହାତ ବଢ଼ାଇ
ଛୁଇଁ ଦେଲା ପ୍ରଥମ ତାରାକୁ
ବାଦୁଡ଼ି ଡେଣାରେ ଚଢ଼ି
ମୁହଁ ସଂଜ ଆକାଶରୁ ଓହ୍ଲାଇଲା
ଝିଣ୍ଟିକା ଗୋଡ଼ରୁ ଛିଟିକି ପଡ଼ିଲେ
ମେଞ୍ଚା ମେଞ୍ଚା ଜୁଳୁଜୁଳିଆ ପୋକ
ବିଲୁଆ ନନାର ହୁକା ହଜିଗଲା
ବେଙ୍ଗୁଲୀ ନାନୀ ରଡ଼ି ଛାଡ଼ି କାନ୍ଦିଲା
ଅଝଟ ଛୁଆ ଅଳି କଲା
ଜହ୍ନମାମୁକୁ ଆଣି ଗୁହାଳରେ ବାନ୍ଧିବାକୁ
ସରଗଶଶି ଧରା ଦେଲା ନାହିଁ
ଆସି ଖସି ପଡ଼ିଲା ନାହିଁ କାହ୍ନୁ ହାତରେ
ଜହ୍ନରୁ ଠେକୁଆ ଡେଇଁ ଚାଲିଗଲା
କଇଁଛ ସାଙ୍ଗରେ ଦୌଡ଼ିବା ପାଇଁ

କାନ୍ଦକାନ୍ଦ ପିଲାଦିନ ଲୁଚି ଚାଲିଗଲା
ଅଗନାଅଗନି ବନସ୍ତ ଭିତରକୁ
ଘୁଞ୍ଚିଯାଉଥିବା
ପଦ୍ମଫୁଲର ପୋଖରୀରେ
ପିଲାଦିନ ବୁଡ଼ିଗଲା ଅଣନିଶ୍ୱାସୀ ହୋଇ
ପିଲାଦିନ ବାଟ ଭୁଲିଗଲା
ଅନାବନା କୋଳି ବଣ ଭିତରେ
ଧୂଳିଆ ଭୂତରେ ହଜିଗଲା
ଡାଆଣୀ ଆଳୁଅରେ ଛଳିଗଲା
ପ୍ରଜାପତି ଡେଣାରେ ଉଡ଼ିଗଲା
ପିଲାଦିନ ଚାଲିଗଲା ଅବୋଧ ନିଷ୍ପାପ
ଗୋହିରି ରାସ୍ତାରେ ଶଗଡ ଚଢ଼ି
ଅଜଣା ରାଇଜର ଅଫେରନ୍ତା ଗାଁ'କୁ

(ସ୍ଥିର ଚିତ୍ର ,୧୯୯୧)

ସମଗ୍ର କବିତାଟିର ମର୍ମସ୍ଥଳ ଯେପରି 'ଅଫେରନ୍ତା ଗାଁ' – ଯେଉଁ ଗାଁକୁ ସେ ଆଉ ଫେରି ନାହାନ୍ତି, ଫେରିବାର ନାହିଁ । ବାଣପୁର ବ୍ୟତୀତ ଏହା ଆଉ କେଉଁ ଗାଁ ବା ହୋଇପାରେ ? ତାଙ୍କ ପିତାଙ୍କ ମୂଳ ଗାଁ ନଇଗୁଆଁ (କାକଟପୁର, ପୁରୀ) ସହିତ ଜଗନ୍ନାଥ ପ୍ରସାଦଙ୍କ ସଂପର୍କ ନ ଥିଲା କେବେ ।

୨୦୦୩ ଅକ୍ଟୋବରର ଆଜି ସକାଳରେ ଜଗନ୍ନାଥ ପ୍ରସାଦ ଫେରୁଥିଲେ ବାଣପୁର । ମହାନଗରୀ ଦିଲ୍ଲୀରେ ରହୁଥିଲେ ମଧ୍ୟ ସେ ବାରମ୍ବାର ଫେରନ୍ତି ନିଜ ଗାଁକୁ, ସହରକୁ, ଓଡ଼ିଶାକୁ – ଆକ୍ଷରିକ ଅର୍ଥରେ ହୁଏତ ନୁହେଁ କିନ୍ତୁ ସ୍ୱପ୍ନରେ, କଳ୍ପନାରେ । ଲେଖନ୍ତି ଓଡ଼ିଆରେ, ଓଡ଼ିଶାର ସାହିତ୍ୟ, ସଂସ୍କୃତି ଓ ଜନଜୀବନ ସହିତ ଜଡ଼ିତ ରହନ୍ତି ସବୁ ସମୟରେ । ମହାନଗରୀର ବ୍ୟାପକତା ଓ ନିଃସଙ୍ଗତା – ଗ୍ରାମ୍ୟ ଓଡ଼ିଶାର ଆଞ୍ଚଳିକତା ଓ ଆବେଷ୍ଟନୀ – ଉଭୟ ମଧ୍ୟରେ ସେ ଖୋଜୁଥାନ୍ତି ନିଜ ସୃଜନସତ୍ତାର ପରିଚୟ । ସେ ଗାଁ'ରେ ରହନ୍ତି ନାହିଁ, କିନ୍ତୁ ତାଙ୍କ ପାଇଁ ଗାଁ ଅଫେରନ୍ତା ନୁହେଁ ନିଶ୍ଚୟ ।

---

# ଦୁଇ ନଈର ଆଶ୍ଳେଷ

**ଗୋ**ପବନ୍ଧୁ ଦାସ ତାଙ୍କର 'ବନ୍ଦୀର ସ୍ୱଦେଶ ଚିନ୍ତା' କବିତାରେ କଟକକୁ 'ମହାନଦୀ ନୀର ନୀଳ-ବସନା' ଅଭିହିତ କରିଛନ୍ତି । ଏହାର ଅର୍ଥ – ମହାନଦୀର ନୀର କଟକର ନୀଳ ଆବରଣ, ଅଥବା ମହାନଦୀ ହିଁ କଟକର ପରିଚୟ । ଜଗନ୍ନାଥ ପ୍ରସାଦଙ୍କର କଟକ ସଂପର୍କରେ କବିତାଟିଏ ମଧ୍ୟ ଅଛି । ସେଥିରେ ସେ କଟକକୁ ଟିକିଏ ଭିନ୍ନ ଭାବରେ ଦେଖିଛନ୍ତି । କଟକ ମହାନଦୀ ଓ କାଠଯୋଡ଼ି, ଦୁଇ ନଦୀର ଆଶ୍ଳେଷ ବା ଆଲିଙ୍ଗନ ମଧ୍ୟରେ ଆବଦ୍ଧ – ଏହିପରି ଚିତ୍ରଟିଏ କଳ୍ପନା କରିଛନ୍ତି ସେ ।

ଜଗନ୍ନାଥ ପ୍ରସାଦଙ୍କ କଟକ ଅବସ୍ଥାନ ସମୟ ୧୯୪୮ ରୁ ୧୯୫୫, ସାତ ବର୍ଷ । ପିତା ଶ୍ରୀଧର ଦାସ ବାଣପୁର ଛାଡ଼ିବା ପରେ ଜଗନ୍ନାଥ ପ୍ରସାଦ ଆସିଲେ କଟକ । ସେଇଠାରେ କଟିଲା ତାଙ୍କ ହାଇସ୍କୁଲ୍ ଓ କଲେଜ୍ ଛାତ୍ର ଜୀବନ । ଶ୍ରୀଧର ଦାସଙ୍କ ଭାଷାରେ :



୧୯୫୧

'... ଏଥି ମଧ୍ୟରେ ମୁଁ ନାନା ସ୍ଥାନରେ ବୁଲି ଶେଷରେ କଟକରେ ରହିଲି । ତା'ର ଦଶମ ଶ୍ରେଣୀ ହେଲାବେଳକୁ ତାକୁ କଟକ ଅଣାଇ ମିଶନ୍ ହାଇସ୍କୁଲ୍‌ରେ (ପରେ ଖ୍ରୀଷ୍ଟ କଲିଜିଏଟ୍) ଭର୍ତ୍ତି କରିଦେଲି... । ସେ ସେହି ସ୍କୁଲ୍‌ରୁ ମାଟ୍ରିକ୍ୟୁଲେସନ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲା ଓ ସମଗ୍ର ବିଶ୍ୱବିଦ୍ୟାଳୟରେ ଦ୍ୱିତୀୟ ସ୍ଥାନ ଅଧିକାର କଲା । ମୁଁ ଉତ୍କଳ ଖ୍ରୀଷ୍ଟିୟାନ କଲେଜରେ ଥିବା ହେତୁ ବ୍ୟୟ ଲାଘବ ନିମନ୍ତେ ତାକୁ ସେହି କଲେଜରେ ପ୍ରବେଶ କରାଇଲି । ଆଇ.ଏ. ପରୀକ୍ଷାରେ ସେ ସେତେ ଭଲ ଫଳ ଦେଖାଇ ପାରି ନ ଥିଲା । ବିଶ୍ୱବିଦ୍ୟାଳୟରେ ସେ ପଞ୍ଚମ ସ୍ଥାନ ଅଧିକାର କରିଥିବା ପରି ମନେପଡ଼େ । ଏହାପରେ ତାକୁ ରେଭେନ୍‌ସା କଲେଜରେ ପଢ଼ାଇବାକୁ ବାଧ୍ୟ ହେଲି । କାରଣ ଆମ କଲେଜରେ ଓଡ଼ିଆ ଓ ଇଂରାଜୀ ଛଡ଼ା ଅନ୍ୟ କୌଣସି ବିଷୟରେ ଅନର୍ସ ଶ୍ରେଣୀର ବ୍ୟବସ୍ଥା ହୋଇ ନ ଥିଲା । ସେ ଅର୍ଥନୀତିରେ ଅନର୍ସ ନେଲା ଓ ଦ୍ୱିତୀୟ ଶ୍ରେଣୀ ଅନର୍ସ ସହ ବି.ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲା । ...'

(ସୁଅ ମୁହଁର ପତର)

ସ୍କୁଲ୍-କଲେଜ ସମୟରେ ପୁତ୍ର ଯେ ଜଣେ ମେଧାବୀ ଛାତ୍ର ଥିଲେ, ଏହା ପିତା ଉଲ୍ଲେଖ କରିଛନ୍ତି । ପ୍ରତ୍ୟେକ ପିତା ପୁତ୍ର କ୍ଷେତ୍ରରେ ଏହା ହିଁ ତ ଚାହାନ୍ତି – ସେ ଭଲ ପଢୁ ଓ ପରେ ତା' ବୃତ୍ତିରେ ସଫଳତା ଲାଭ କରୁ । ଜଣେ ପିତା ଭାବରେ

ଶ୍ରୀଧର ଦାସ ତାହା ହିଁ ଚାହିଁଛନ୍ତି । ଛାତ୍ର ଜୀବନରେ ଜଗନ୍ନାଥ ପ୍ରସାଦଙ୍କର କବିତା ରଚନା ଓ ଚିତ୍ର ଅଙ୍କନ ସଂପର୍କରେ ଆପାତତଃ କିଛି କହି ନାହାନ୍ତି ।

ଜଗନ୍ନାଥ ପ୍ରସାଦଙ୍କୁ ସେ ସମୟରେ – ଅର୍ଥାତ୍ ତାଙ୍କ କଟକ ରହଣି ସମୟରେ – ଯେଉଁମାନେ ନିକଟରୁ ଜାଣିଥିଲେ ବା ତାଙ୍କ ସହିତ ଅନ୍ତରଙ୍ଗ ଥିଲେ, ସେମାନେ ତାଙ୍କ ସଂପର୍କରେ ସ୍ମରଣ କରନ୍ତି – ସେ ଥିଲେ ଜଣେ ବିଚକ୍ଷଣ ଛାତ୍ର; କବିତା ଲେଖୁଥିଲେ, ଚିତ୍ର ଆଙ୍କୁଥିଲେ, ଥିଲେ ଟିକେ ଲାଜକୁଳା । ପ୍ରାୟ ତିରିଶି ବର୍ଷ ହେଲା ମୋର ତାଙ୍କ ସହିତ ପରିଚୟ – ସେ ମୋର ସମବୟସ୍କ ନ ହେଲେ ମଧ୍ୟ ତାଙ୍କ ସହିତ ଅନ୍ତରଙ୍ଗତା । ଛାତ୍ରଭାବରେ ତାଙ୍କ ସଫଳତା ବା ଉତ୍କର୍ଷ ପ୍ରସଙ୍ଗ ସେ କେବେ ମୋ ସହିତ ଆଲୋଚନା କରି ନାହାନ୍ତି ।

ମୋର ସହପାଠୀ ଓ ବଂଧୁ ଲକ୍ଷ୍ମୀଧର ମିଶ୍ର ଜଗନ୍ନାଥ ପ୍ରସାଦଙ୍କ ଛାତ୍ର ଜୀବନ ସଂପର୍କରେ ଚମତ୍କାର କଥାଟିଏ କହିଛନ୍ତି । ଲକ୍ଷ୍ମୀଧର ନିଜେ ଥିଲେ ଜଣେ ମେଧାବୀ ଛାତ୍ର; ଜଗନ୍ନାଥ ପ୍ରସାଦଙ୍କ ଭଳି ଆଇ.ଏ.ଏସ୍.ରେ ଯୋଗଦାନ କରି ଭାରତ ସରକାରଙ୍କ ଶ୍ରମ ସଚିବ ଭାବରେ ଅବସର ଗ୍ରହଣ କରିଛନ୍ତି । ସଂପ୍ରତି ଦିଲ୍ଲୀରେ ଅବସ୍ଥାନ କରନ୍ତି । ଖ୍ରୀଏଷ୍ଟ୍ କଲେଜରେ ଜଗନ୍ନାଥ ପ୍ରସାଦଙ୍କ ଛାତ୍ର ଜୀବନ ସଂପର୍କରେ ତାଙ୍କର ସ୍ମରଣ :

'୧୯୫୧-୫୪ ମଧ୍ୟରେ ମୋ ବଡ଼ଭାଇ ଡକ୍ଟର୍ ଶ୍ରୀନିବାସ ମିଶ୍ର ଖ୍ରୀଏଷ୍ଟ୍ କଲେଜ ଓଡ଼ିଆ ବିଭାଗରେ ଅଧ୍ୟାପକ ଥିଲେ । ଜଗନ୍ନାଥ ପ୍ରସାଦ ଦାସ ଥିଲେ ତାଙ୍କର ଛାତ୍ର । ମୁଁ ସେତେବେଳେ ଗୋଟିଏ ଗ୍ରାମ୍ୟ ବିଦ୍ୟାଳୟରେ ପଢୁଥିଲି । ତେଣୁ ତାଙ୍କୁ ଭେଟିବାର ସୁଯୋଗ ମୋର ନ ଥିଲା ।

'କିନ୍ତୁ ତାଙ୍କ ସଂପର୍କରେ ମୁଁ ଅନେକ କିଛି ଶୁଣିବାକୁ ପାଉଥିଲି – ତାଙ୍କର କଳ୍ପନାପ୍ରବଣତା, ଦୃଷ୍ଟିଭଙ୍ଗୀ, ସୌନ୍ଦର୍ଯ୍ୟବୋଧ, ବିଦ୍ୟା ଅଧ୍ୟୟନରେ କୃତିତ୍ୱ ସଂପର୍କରେ । ଅତି କମ୍ ବୟସରୁ ତେଣୁ ମୁଁ ତାଙ୍କୁ ମୋର ଆଦର୍ଶ ବୋଲି ଭାବୁ ଥିଲି ... । ପରେ ମୋ ବଡ଼ଭାଇଙ୍କର ଫକୀରମୋହନ କଲେଜ (ବାଲେଶ୍ୱର)ରେ ପୋଷ୍ଟିଙ୍ଗ୍ ହେଲା । ଭାଇଙ୍କ ପାଖରେ ରହୁଥିବା ସମୟରେ ଭାଇଙ୍କୁ ଖ୍ରୀଏଷ୍ଟ୍ କଲେଜରେ ଦିଆଯାଇଥିବା ସୁନ୍ଦର ଓଡ଼ିଆରେ ଲିଖିତ ବିଦାୟ ବାର୍ତ୍ତାଟିଏ ଦେଖିବାକୁ ପାଇଲି । ଏହା ଭାଇଙ୍କ ଶୋଇବା ଘର କାନ୍ଥରେ ଟଙ୍ଗା ଯାଇଥିଲା । ଜାଣିବାକୁ ପାଇଲି,

କଲେଜ ସାଙ୍ଗଙ୍କ ସହିତ, ୧୯୫୨
ଆଗ ଧାଡ଼ିରେ ବାମରୁ ପ୍ରଥମ



ଭାଇଙ୍କର ପ୍ରିୟ ଛାତ୍ର ଜଗନ୍ନାଥବାବୁ ଏହା ଲେଖିଛନ୍ତି । ୧୯୫୫-୫୯ ମଧ୍ୟରେ ବେଶ୍ କେତେଥର ମୁଁ ଏହି ବିଦାୟ ବାର୍ତ୍ତା ପଢ଼ିଥିଲି । ଯେତେଥର ପଢ଼େ, ଜଣେ ଗୁରୁଙ୍କ ପ୍ରତି ତାଙ୍କ ଛାତ୍ରଙ୍କ ଗଭୀର ସମ୍ମାନବୋଧରେ ଅଭିଭୂତ ହୋଇଯାଏ । ବିଦାୟ ବାର୍ତ୍ତାଟି ସୁନ୍ଦର ଅକ୍ଷରରେ, କ୍ଷୁଦ୍ର କ୍ଷୁଦ୍ର ବାକ୍ୟରେ, ସିଧା ସିଧା ଧାଡ଼ିରେ ଲେଖା ଯାଇଥିଲା । ଗୋଟିଏ ଅନାବିଳ ହୃଦୟ ଓ ସ୍ୱଚ୍ଛ ମନର ଏହି ଅଭିବ୍ୟକ୍ତି ମୋତେ ଚିତ୍ର ବା ପେଣ୍ଟିଂଟିଏ ପରି ମନେ ହେଉଥିଲା ।

## ପ୍ରତ୍ୟୁତ୍ତର

ଶ୍ରୀ ଜଗନ୍ନାଥ ପ୍ରସାଦ ଦାସ୍ ।

[illegible]

କୁଙ୍କୁମ, ବମ୍ବେ, ଡିସେମ୍ବର ୧୯୪୯

'ଜୀବନରେ ବହୁ ଆଶ୍ଚର୍ଯ୍ୟକର ଅପ୍ରତ୍ୟାଶିତ ଘଟଣା ଘଟିଛି । କେତେକ ବର୍ଷ ପରେ ଆକସ୍ମିକ ଭାବେ ଜଗନ୍ନାଥ ବାବୁଙ୍କର ଆଇ.ଏ. ପରୀକ୍ଷା ପତ୍ରଟିଏ ଦେଖିଲି । ଏଭଳି ସୁଲିଖିତ ପରୀକ୍ଷା ପତ୍ରଟିଏ ଏଯାଏଁ ମୁଁ ଦେଖି ନାହିଁ । ତାଙ୍କର ହସ୍ତାକ୍ଷର ଯେପରି ଥିଲା ଏକ କଳାକୃତି । ବାକ୍ୟଗୁଡ଼ିକ ଥିଲା ସରଳ, ଅବ୍ୟୟ ପଦର ବ୍ୟବହାର ପ୍ରାୟ ନ ଥିଲା । ଲେଖାର ବିଷୟବସ୍ତୁ ଓ ଶୈଳୀ ଥିଲା ଆକର୍ଷଣୀୟ ... । ଏହି ପରୀକ୍ଷା ପତ୍ର ପାଇଁ ତାଙ୍କୁ ଶତକଡ଼ା ସତୁରୀ ମାର୍କସ୍ ମିଳିଥିଲା (କୌଣସି ସାହିତ୍ୟ ପରୀକ୍ଷାରେ ସେତେବେଳେ ଶତକଡ଼ା ସତୁରୀ ମାର୍କସ୍ ପ୍ରଦାନ କରାଯିବା ଥିଲା ଏକ ବିସ୍ମୟ) । ଏକ ମଡେଲ୍ ପରୀକ୍ଷା ପତ୍ର ଭାବରେ ତାଙ୍କର ଶିକ୍ଷକ ପର ପିଢ଼ିର ଛାତ୍ରଛାତ୍ରୀମାନଙ୍କ ପାଇଁ ଏହା ସାଇତି ରଖିଥିଲେ ।

ଜଗନ୍ନାଥ ବାବୁ ସବୁଦିନ ପାଇଁ ମୋର ଆଦର୍ଶ ହୋଇ ରହିଗଲେ ।'

(ସୋଭେନିର୍ ଅଫ୍ ଓଡ଼ିଶା ଫୋରମ୍ ଗ୍ଲୋବାଲ୍ କନ୍‌ଭେନ୍‌ସନ୍ - ୨୦୦୬)

ଖ୍ରୀଏଷ୍ଟ୍ କଲେଜରେ ଜଗନ୍ନାଥ ପ୍ରସାଦଙ୍କ ଅନ୍ୟତମ ଅଧ୍ୟାପକ ଥିଲେ ପ୍ରତିଷ୍ଠିତ ସମାଲୋଚକ ପଠାଣି ପଟ୍ଟନାୟକ । ତାଙ୍କର ଆତ୍ମଜୀବନୀ 'ଜୀବନର ଚଲାପଥ' (ଜନସୁଧା, ଜାନୁଆରୀ - ୨୦୦୭) ରେ ଶିକ୍ଷକସୁଲଭ ଢଙ୍ଗରେ ସେ ଜଗନ୍ନାଥ ପ୍ରସାଦଙ୍କୁ ସ୍ମରଣ କରିଛନ୍ତି 'ଜଣେ ପ୍ରଥମ ଶ୍ରେଣୀର ଛାତ୍ର' ଭାବରେ । ଜଗନ୍ନାଥ ପ୍ରସାଦଙ୍କ ସହପାଠୀ ଅବସରପ୍ରାପ୍ତ ଦର୍ଶନ ପ୍ରଫେସର ଗଣେଶ୍ୱର ଦାସ ତାଙ୍କ ବଂଧୁଙ୍କ ଛାତ୍ର ଜୀବନ ସଂପର୍କରେ ଲେଖିଲା ବେଳେ ଟିକିଏ ଭାବପ୍ରବଣ ହୋଇପଡ଼ନ୍ତି । ତାଙ୍କ ଭାଷାରେ :

'ଆଇ.ଏ. ପଢ଼ିବା ସମୟରୁ ଆମ ଘର ପାଖରେ ରହୁଥିଲେ ଖ୍ରୀଏଷ୍ଟ୍ କଲେଜ ଓଡ଼ିଆ ଅଧ୍ୟାପକ ପଣ୍ଡିତ ଶ୍ରୀଧର ଦାସ । ତାଙ୍କର ବଡ଼ପୁଅ ଜଗନ୍ନାଥ ପ୍ରସାଦ ଦାସ ମୋ'ଠାରୁ ପ୍ରାୟ ତିନିବର୍ଷ ସାନ ହେଲେ ବି ଆମେ ଦୁହେଁ ଅନ୍ତରଙ୍ଗ ସାଙ୍ଗ ହୋଇଗଲୁ । ଜଗନ୍ନାଥ ଥିଲେ ଅତୀବ ମେଧାବୀ ... ।' (ମନେପଡ଼େ, ୨୦୦୫)

ଆଜି ଜଗନ୍ନାଥ ପ୍ରସାଦଙ୍କ ଖ୍ୟାତି ମୁଖ୍ୟତଃ କବିତା, ଗଳ୍ପ, ଉପନ୍ୟାସ, ନାଟକ କ୍ଷେତ୍ରରେ । କିନ୍ତୁ ଜଣେ ମେଧାବୀ ଛାତ୍ରର ନିଷ୍ଠା, ଅଧ୍ୟୟନ, ଅନୁସନ୍ଧିତ୍ସା,

ଗବେଷଣାପ୍ରବୃତ୍ତି କେବେ ବି ତାଙ୍କର ଊଣା ହୋଇ ନାହିଁ । ଏହା ବୋଧହୁଏ ସ୍ପଷ୍ଟ ତାଙ୍କର କଳା-ସମାଲୋଚନା କ୍ଷେତ୍ରରେ । ସୃଜନଶୀଳ ରଚନା ସହିତ କଳା ସମାଲୋଚନା କ୍ଷେତ୍ରରେ ସେ ନିଜର ପାରଦର୍ଶିତାର ପ୍ରମାଣ ଦେଇଛନ୍ତି । ୧୯୭୯ରେ ସେ ଲାଭ କରିଥିଲେ ହୋମି ଭାବା ଫେଲୋସିପ୍ – ପୁରୀର ପଟଚିତ୍ର ଉପରେ ଗବେଷଣା କରିବା ପାଇଁ ।

କେବଳ କଟକର ଛାତ୍ରଜୀବନ କାଳରେ ନୁହେଁ, ଆଜୀବନ ସେ ରହି ଆସିଛନ୍ତି ଜଣେ ଉତ୍ତମ ଛାତ୍ର । ଅଧ୍ୟୟନ, ଗବେଷଣା, ଅନୁସନ୍ଧିତ୍ସା ରହି ଆସିଛି ତାଙ୍କ ଜୀବନର ଗୋଟିଏ ଧାରା ହୋଇ । ଅନ୍ୟ ଧାରାଟି ଅବଶ୍ୟ ସୃଜନଶୀଳତା ।

କଟକରେ ଛାତ୍ର ଥିବା ସମୟରେ ହିଁ ଜଗନ୍ନାଥଙ୍କ କବିପ୍ରତିଭାର ପର୍ଯ୍ୟାପ୍ତ ପ୍ରମାଣ ମିଳିଥିଲା । ୧୯୪୮-୫୫ ମଧ୍ୟରେ ତାଙ୍କ ରଚିତ କବିତାର ସଂଖ୍ୟା ପ୍ରାୟ ଏକଶତ; ସେଥିମଧ୍ୟରୁ ପ୍ରାୟ ଅର୍ଦ୍ଧେକ ପ୍ରକାଶିତ ହୋଇ ନ ଥିଲା, ଏବେ ମଧ୍ୟ ଅପ୍ରକାଶିତ ଅଛି । ସେଥିମଧ୍ୟରୁ କେତେକ ତଥାପି କବିଙ୍କ ନିକଟରେ ପାଣ୍ଡୁଲିପି ଅବସ୍ଥାରେ ଅଛି । ୧୯୫୧ରେ ସେ କ୍ଷୁଦ୍ର ସଂକଳନଟିଏ ପ୍ରକାଶ କରିଥିଲେ 'ସ୍ତବକ' । ଏଥିରେ ଥିଲା ଅଣଚାଳିଶିଟି କବିତା । ପ୍ରକାଶକ : ଓଡ଼ିଶା ପବ୍ଲିଶିଂ ହାଉସ୍, ମୂଲ୍ୟ ଟ ୦.୪ । ଏହା ମୁଦ୍ରିତ ହୋଇଛି ପରମାର୍ଥୀ ପ୍ରେସ୍‌ରେ; ମୁଦ୍ରାକର ପରବର୍ତ୍ତୀ ସମୟରେ ଗୋସ୍ୱାମୀ ପ୍ରେସ୍‌ର ପ୍ରତିଷ୍ଠାତା ଦିବାକର ମିଶ୍ର । ଏ ସଂକଳନର ଗୋଟିଏ କବିତା ଦେଖନ୍ତୁ :

## ଅନ୍ତରେ ମୋର ସୃଷ୍ଟି ଚେତନା ଜାଗେ

ଆଲୋକର ନବ ରାଗେ
ଆଜି ଏ ମୋର ଅନ୍ତର ତଳେ ସୃଷ୍ଟି ଚେତନା ଜାଗେ ।
ପଥର ସୂଚନା ପାଇଅଛୁ ଆଜ ପାନ୍ଥ ମୁଁ ପଥହରା,
ଘନ ତମସାର ଯବନିକା ତଳେ ସୁନ୍ଦରତର ଧରା;
ନାଚି ନାଚି ଉଠେ ଆଖି ଆଗେ ମୋର ସୃଷ୍ଟି ଏ ନିରୁପମ ।
ଇଚ୍ଛା ମୋ ହୁଏ ଉଡ଼ି ଉଡ଼ି ଯିବି ମୁକ୍ତ ବିହଗ ସମ ।
ପାଇଛୁ, ପାଇଛୁ ପଥ,
ଅନ୍ତର ତଳେ ଜାଗିଛୁ ରେ ଆଜ ମହା ସୃଷ୍ଟିର ବ୍ରତ ।

'ସ୍ତବକ'ର ମୁଦ୍ରଣ ଓ ପ୍ରଚ୍ଛଦପଟ ପରିଚ୍ଛନ୍ନ ଓ ରୁଚିସଂପନ୍ନ । ତେବେ ଯେଉଁମାନେ ଜଗନ୍ନାଥ ପ୍ରସାଦଙ୍କ ଷଷ୍ଠ ଦଶକ ପରବର୍ତ୍ତୀ ସମୟର କବିତା ସହିତ ପରିଚିତ, ସେମାନଙ୍କୁ ଏ ସଂକଳନଟି ଅନ୍ୟ କେଉଁ କବିଙ୍କ ରଚନା ଭଳି ମନେ ହୋଇପାରେ । କବିତାଗୁଡ଼ିକ ସେ ସମୟରେ ପ୍ରଚଳିତ ଓ ଆଦୃତ ପାରଂପରିକ ଛନ୍ଦରେ ରଚିତ; ବିଷୟବସ୍ତୁ ମୁଖ୍ୟତଃ ପ୍ରକୃତି, ପ୍ରେମ, ଇତିହାସ ଇତ୍ୟାଦି ।

ସ୍ତବକ

ଶ୍ରୀ ଜଗନ୍ନାଥପ୍ରସାଦ ଦାସ

ସ୍ତବକ, ୧୯୫୧

କବିତା ରଚନା ସହିତ ସେ ଅଳ୍ପ କେତୋଟି ଗଳ୍ପ ଓ ପ୍ରବନ୍ଧ ମଧ୍ୟ ପ୍ରକାଶ କରିଥିଲେ, ମାତ୍ର କବିତା ହିଁ ଥିଲା ତାଙ୍କର ମୂଳ ପରିଚିତି । ୧୯୭୧ରେ ପ୍ରକାଶିତ 'ପ୍ରଥମ ପୁରୁଷ'କୁ ଜଗନ୍ନାଥ ପ୍ରସାଦ ତାଙ୍କର ପ୍ରଥମ କବିତା ସଂକଳନର ମର୍ଯ୍ୟାଦା ଦିଅନ୍ତି ।

ତା'ପୂର୍ବରୁ ରଚିତ ପ୍ରକାଶିତ / ଅପ୍ରକାଶିତ କବିତାସବୁକୁ ସେ 'ଅପରିପକ୍ୱ' ବୋଲି ଆଡ଼େଇ ଦିଅନ୍ତି । ସେଥିପାଇଁ କଟକ ରହଣି ସମୟର କୌଣସି କବିତା ସେ ସ୍ଥାନିତ କରି ନାହାନ୍ତି 'ପ୍ରଥମ ପୁରୁଷ'ରେ ।

ଜଣେ କବି ବା ଲେଖକ ସବୁ ସମୟରେ ତା' କୃତିର ଯଥାର୍ଥ ବିଚାରକ ହୋଇ ନ ପାରେ । ଜଗନ୍ନାଥ ପ୍ରସାଦ 'ପ୍ରଥମ ପୁରୁଷ' ପ୍ରକାଶନ ପୂର୍ବରୁ ଯେଉଁ କବିତାସବୁ ରଚନା କରିଥିଲେ, ତାହାର ଯଥେଷ୍ଟ ଆବେଦନ ଥିଲା ଅନେକ ପାଠକଙ୍କ ପାଇଁ । ତାଙ୍କର ଅନ୍ୟତମ ସମସାମୟିକ, ୟୁନିଅନ୍ ପବ୍ଲିକ୍ ସର୍ଭିସ୍ କମିଶନ୍‌ର ପୂର୍ବତନ ଚେୟାରମ୍ୟାନ୍ ପୂର୍ଣ୍ଣଚନ୍ଦ୍ର ହୋତା କହନ୍ତି :

'୧୯୫୨ରେ ଖ୍ରୀଏଷ୍ଟ୍ କଲେଜ୍ ପତ୍ରିକାରେ ପ୍ରକାଶିତ 'ଚିଲିକା' କବିତାଟି ମୋ ସ୍ମରଣକୁ ଆସେ । ଏ କବିତାଟି ବାରମ୍ବାର ପଢ଼ିଲା ପରେ ମୋର ମନେ ହୋଇଥିଲା – ଓଡ଼ିଆ କବିତା କ୍ଷେତ୍ରରେ ଏହାର ସ୍ଥାନ ଖୁବ୍ ଉଚ୍ଚରେ । ବହୁବର୍ଷ ପରେ ଏହାର ଗୋଟିଏ ଫଟୋକପି ପଠାଇବା ପାଇଁ ମୁଁ ଓଡ଼ିଶାର କେତେକ ସାହିତ୍ୟିକଙ୍କୁ ଅନୁରୋଧ କରି ପତ୍ର ଲେଖିଲି । ଖ୍ରୀଏଷ୍ଟ୍ କଲେଜର ଅଧକ୍ଷ ଓ କଟକର ଜିଲ୍ଲାପାଳଙ୍କୁ ମଧ୍ୟ । ସେମାନେ ଉତ୍ତର ଦେଲେ, ପତ୍ରିକାଟି କେଉଁଠାରେ ଉପଲବ୍ଧ ନୁହେଁ ।'

ତରୁଣ ଜଗନ୍ନାଥ ପ୍ରସାଦଙ୍କ ସେହି କଟକ ରହଣି ସମୟର କବିତାର ଯେ ବହୁ ପାଠକ ଥିଲେ, କବି ନିଜେ ହୁଏତ ଏଥିରେ ବିଶ୍ୱାସ କରନ୍ତି ନାହିଁ । ବହୁବର୍ଷ ପରେ ତାଙ୍କ ନିକଟକୁ ପତ୍ରଟିଏ ଲେଖିଲେ ମହେଶ୍ୱର ମହାନ୍ତି । ମହେଶ୍ୱରବାବୁ ଜଣେ ଶିଶୁ ସାହିତ୍ୟିକ; ଖ୍ରୀଏଷ୍ଟ୍ କଲେଜ୍‌ରେ ଓଡ଼ିଆ ବିଭାଗରେ ଅଧ୍ୟାପନା କରି ଅବସର ନେଇଛନ୍ତି ୨୦୦୨ରେ । ମହେଶ୍ୱରବାବୁଙ୍କ ଚିଠିଟି ଜଗନ୍ନାଥ ପ୍ରସାଦଙ୍କ ୧୯୪୮–୫୫ ମଧ୍ୟରେ ଲିଖିତ କବିତା ସଂପର୍କରେ ଏକ ମୂଲ୍ୟବାନ୍ ଓ ମଜାଦାର ମନ୍ତବ୍ୟ :

'ମଫସଲ ହାଇସ୍କୁଲ୍‌ରେ ଛାତ୍ର ଥିବାବେଳେ ଭବିଷ୍ୟତରେ କ'ଣ ଗୋଟାଏ ହେବି ବୋଲି କିଛି ଚିନ୍ତା କରି ନ ଥିଲି । ଗପ କବିତା ଲେଖୁଥିଲି, ତାହା ପତ୍ରପତ୍ରିକାରେ ଛପା ହେଉଥିଲା । ସେଇ କାରଣରୁ ସାହିତ୍ୟ ପ୍ରତି ଶ୍ରଦ୍ଧା ଥିଲା । ଶେଷରେ ଏଭଳି

ହେଲା, ବୃତ୍ତି ଜୀବନରେ ସାହିତ୍ୟ ପଢ଼ାଇଲି, ପଢ଼ିଲି, ଆଲୋଚନା କଲି । କବି ଲେଖକମାନଙ୍କୁ ଚିହ୍ନିଲି, ଶ୍ରେଣୀଗୃହରେ ପିଲାମାନଙ୍କୁ ଚିହ୍ନାଇଲି; ଅଥଚ କିଶୋର ବୟସରେ ଏଇ କ୍ଷୁଦ୍ର ପ୍ରାଣକୁ ଆଲୋଡ଼ିତ କରିଥିବା ଏବଂ ଅଭିଭୂତ କରିଥିବା ଜଣେ କବିଙ୍କୁ ଖୋଜି ପାଇଲି ନାହିଁ । ଦୀର୍ଘ ୫୦ବର୍ଷ ଧରି ତାଙ୍କର ନୀରବ ଅନ୍ୱେଷଣ କରିଛି, ହେଲେ ସଫଳ ହୋଇପାରି ନାହିଁ । ବେଳେବେଳେ ସେ ନାଆଁଟି ଦ୍ୱିତୀୟା ଚାନ୍ଦ ଭଳି ମନରେ ଉଙ୍କି ମାରି ପରକ୍ଷଣରେ କେଉଁଆଡ଼େ ଲିଭିଯାଏ । ଆଉ ବେଳେବେଳେ ସେ ପଛପଟୁ ଆସି ମୋର ଦୁଇ କାନ୍ଧରେ ତାଙ୍କ ହାତ ଭରା ଦେଇ କିଶୋର ବୟସରେ ପଢ଼ିଥିବା କବିତାର କେଇପଦ କାନ ପାଖରେ ଗୁଣୁଗୁଣୁ କରି ଗାଇ ଦେଇ, ମୁଁ ବେକ ଭାଙ୍ଗି ପଛକୁ ଚାହିଁଦେଲା ବେଳକୁ କୁଆଡ଼େ ଲୁଚିଯାଆନ୍ତି । ଏଇଭଳି ଗୋଟିଏ କବିତା ଥିଲା–

ବାଲୁକା ପ୍ରାନ୍ତରେ ତୁମେ ଶାୟିତା କେ ପାଷାଣ ରୂପସୀ
ଯୌବନର ଅଭିଶାପ ଘେନି କିବା ମଞ୍ଜୁଳା ଉର୍ବଶୀ ।
ଊର୍ଦ୍ଧ୍ୱେ ତବ ଆକାଶର ଶାନ୍ତ ଛବି, ଅବନତ ଧରା
ଜ୍ୟୋତ୍ସ୍ନାସିକ୍ତ ସନ୍ଧ୍ୟାବାଳା ଜ୍ୟୋତ୍ସ୍ନାୟିତ ନଭ ଆତ୍ମହରା ।

ଦସ୍ତଖତ ୧୯୫୪

ମଲାଟରେ ବୋଧହୁଏ କୌଣସି ଛବି ନ ଥିବା ତିନି ଅକ୍ଷର ବିଶିଷ୍ଟ ଗୋଟିଏ ଛୋଟ ପୁସ୍ତକର ଏଇଟି ଥିଲା ପ୍ରଥମ କବିତା । ପୁସ୍ତକର ନାଆଁ ମନେ ନାହିଁ, କେବଳ କବିଙ୍କର ନାଆଁ ମନେଅଛି, ଜଗନ୍ନାଥ ପ୍ରସାଦ ଦାସ । କେଉଁ ଏକ ଉପନ୍ୟାସର କାହାଣୀ ଭଳି ଦୀର୍ଘ ଅର୍ଦ୍ଧଶତାବ୍ଦୀ ଧରି ମନେମନେ ନୀରବରେ ଅନ୍ୱେଷଣ କରିଛି ଏଇ କବିଙ୍କୁ ।

'ସ୍କୁଲ୍ ଜୀବନରେ ମୋର କେତୋଟି କବିତା କଲିକତାରୁ ପ୍ରକାଶ ପାଉଥିବା 'ଆସନ୍ତାକାଲି'ର କିଶୋର ସଂସାର ବିଭାଗରେ ମଝିରେ ମଝିରେ ଛପା ଯାଇଥିଲା । ସେଇ ଅବସରରେ ମୁଁ ପ୍ରାୟ ନିୟମିତ 'ଆସନ୍ତାକାଲି' ଖଣ୍ଡିଏ ସଂଗ୍ରହ କରି ପଢୁଥିଲି । ସେଇ ଆସନ୍ତାକାଲିରେ ପ୍ରାୟ ୧୯୫୩ / ୫୪ ବେଳକୁ ଜଗନ୍ନାଥ ପ୍ରସାଦଙ୍କ ନାମରେ ନିୟମିତ କବିତା ପ୍ରକାଶ ପାଉଥିଲା । ଅସ୍ପଷ୍ଟଭାବରେ ସେଥିରୁ ଏବେ ମଧ ଧାଡ଼ିଏ ଦୁଇଧାଡ଼ି ମନେଅଛି–

ମତେ ଆଜି ଦୂରେ ଧୂସର ମରୁର
ପାନ୍ଥ ନିବାସ ଡାକେ । ...
××× ପାନ୍ଥଶାଳାର ମଧୁର ସ୍ୱପ୍ନ ବ୍ୟାକୁଳ କରିଛି ପ୍ରାଣ ।

ଏହି କବିତାର ଶିରୋନାମା ଅବଶ୍ୟ ମନେ ନାହିଁ । ସେଦିନର ସେଇ କିଶୋର ପ୍ରାଣକୁ ଅଧିକ ଅଭିଭୂତ କରିଥିଲା ଆଉ ଗୋଟିଏ କବିତା, ଯାହାର କିଛି ଅଂଶ ମନେ ପଡୁଛି–

ରକ୍ତର ତଳେ ନାମହୀନ କେଉଁ
ଜୀବାଣୁର ଦଳ ଛୁଟେ,
ମଣିଷ ଦେହରୁ ତିଳତିଳ କରି
ରକତ ମାଉଁସ ଲୁଟେ ।

ଏ ପଦଟି ମନକୁ ଖୁବ୍ ପାଇଯାଇଥିଲା । ମୋର ସ୍ମୃତି ଶକ୍ତି ଏତେ ପ୍ରଖର ନୁହେଁ । ଏହାକୁ ପାଠ ଘୋଷିଲା ଭଳି ମୁଖସ୍ଥ କରି ନ ଥିଲି । କିଶୋର ବୟସରେ ବୋଧେ ଏଇଭଳି ମନଛୁଆଁ ଗୀତ ବା କବିତା ବଳେବଳେ ମନେ ରହିଯାଏ । ଏଇଭଳି ଆଉ ଗୋଟିଏ ମନଛୁଆଁ କବିତାର କିୟଦଂଶ ହେଉଛି :

ଗର୍ଜେ କମାଣ ଗର୍ଜଇ ପରମାଣୁ
ଧ୍ୱଂସର ମହା ଅଗ୍ନି ତୋଳଇ ଶିଖା xxx
ମଣିଷ କରିଛି ମଣିଷରେ ଆଜି ଦାସ ।

ଆଉ ମନେ ପଡୁ ନାହିଁ । ବୟସ ଆଗେଇ ଯିବା ସଙ୍ଗେ ସଙ୍ଗେ ସ୍ମୃତି ଦୁର୍ବଳ ହୋଇଯାଉଛି । ଏଇଟି 'ଆସନ୍ତାକାଲି'ରେ ଛପାଯାଇଥିଲା କି ସେଇ ତିନି ଅକ୍ଷରିଆ ବହିରେ ଛପାଥିଲା ମନେ ନାହିଁ ।

'୫୦ ବର୍ଷ ତଳର 'ଜଗନ୍ନାଥ ପ୍ରସାଦ ଦାସ' ନାମଟି ସହିତ ବର୍ତ୍ତମାନର ଜଗନ୍ନାଥ ପ୍ରସାଦଙ୍କୁ ମୁଁ କେବେ ଯୋଡ଼ି ପାରି ନ ଥିଲି । ବର୍ତ୍ତମାନର ଜଗନ୍ନାଥ ପ୍ରସାଦଙ୍କୁ ସେତେବେଳେ କେତେ ବର୍ଷ ହୋଇଥିବ କି ? ସେ ଜଣ ସେତେବେଳକୁ କବି ହେଲେଣି, ତାଙ୍କର ପୁଣି ବହି ଛପାଯିବ । ସେତେବେଳର ଜଗନ୍ନାଥ ପ୍ରସାଦ ନିଶ୍ଚେ ଜଣେ ବୟସ୍କ ବ୍ୟକ୍ତି ହୋଇଥିବେ, ପରିପକ୍ୱ ଚିନ୍ତାଧାରାର ମଣିଷଟିଏ ହୋଇଥିବେ । ସେ କୁଆଡ଼େ ହଜିଗଲେଣି, ତାଙ୍କ ଖବର କେହି ରଖି ନାହାନ୍ତି । ଏଇଭଳି ଏକ ଦୃଢ଼ନିଶ୍ଚିତ ଭ୍ରମ ଧାରଣା ମନରେ ପୋଷଣ କରି ତାଙ୍କୁ ସେଇଠି ପରିତ୍ୟାଗ କରିଥିଲି ।

'ପ୍ରାୟ ଦୁଇବର୍ଷ ତଳେ ମୋର ପ୍ରତିବେଶୀ ଅଧ୍ୟାପକ ପଠାଣି ପଟ୍ଟନାୟକଙ୍କୁ କୌଣସି ଏକ ପ୍ରସଙ୍ଗରେ ଥରେ ଏଇ କଥାଟି ପଚାରିଲି । ସେ ସନ୍ଦେହମିଶ୍ରିତ ସ୍ୱରରେ



ଆଜି ତାଙ୍କୁ ବଞ୍ଚିବାକୁ ଦିଅ

ଜଗନ୍ନାଥ ପ୍ରସାଦ ଦାସ

ତୁମ୍ଭ ଏଇ ମୁଠିକାରେ ଜନ୍ମ ନେଇଛି ଯେ ଶିଶୁ ସନ୍ତାନ
ଆଜି ତାଙ୍କୁ ବଞ୍ଚିବାକୁ ଦିଅ,
ଅନାହୂତ ସମ ଆବେ ଆଗାମୀର ଦେବ ଯେ ସମ୍ମାନ
ଆଜି ତାଙ୍କୁ ବଞ୍ଚିବାକୁ ଦିଅ ।

'ଏକକ୍ଷେତ୍ର', ସଂପାଦକ ରାଧାମୋହନ ଗଡ଼ନାୟକ, ପ୍ରଥମ ବର୍ଷ ପ୍ରଥମ ସଂଖ୍ୟା ୧୯୫୬

କହିଲେ, ଜଗନ୍ନାଥ ପ୍ରସାଦ ଛାତ୍ରାବସ୍ଥାରେ କବିତା ଲେଖୁଥିଲେ । ହୁଏତ ସେଇ ହୋଇପାରନ୍ତି । ପରବର୍ତ୍ତୀ କାଳରେ ସେ ଆଧୁନିକ କବିତା ଲେଖୁଛନ୍ତି । ଏଣିକି ଗୋଟିଏ ସୂତ୍ର ମିଳିଗଲା ଏତେଦିନ ପରେ । ନୀରବ ଅନ୍ୱେଷଣ ଅପେକ୍ଷା ଏଇ ପ୍ରଶ୍ନଟି ତାଙ୍କ ଆଗରେ ବହୁ ଆଗରୁ ଥୋଇଥିଲେ ଅଥବା ଟିକିଏ ସାଧାରଣ ଜ୍ଞାନ ଖଟାଇଥିଲେ ହୁଏତ ଏଭଳି ଘନ କୁହୁଡ଼ି ଭିତରେ ଏତେକାଳ ରହିବାକୁ ହୋଇ ନ ଥାନ୍ତା । ଜଗନ୍ନାଥବାବୁ ପିଲାଦିନୁ କବିତା ଲେଖୁଥିଲେ । କିଶୋର ବୟସରେ ତାଙ୍କର ବହି ଛପା ହୋଇଥିଲା ।

'ବାସ୍, ତା'ପର ଘଟଣା :

'ଠିକଣା ଓ ଟେଲିଫୋନ୍ ନମ୍ବର ମୋ ପାଖରେ ନ ଥିଲା । ତାହାକୁ ସଂଗ୍ରହ କଲି ଅନ୍ୟ ସୂତ୍ରରୁ । ମିଳିଗଲା ମୋର ଉତ୍ତର । ସେଇ ତିନିଅକ୍ଷରବିଶିଷ୍ଟ କବିତା ପୁସ୍ତକର ନାମ ହେଉଛି 'ସ୍ତବକ' । ଜଣେ ସୁଖ୍ୟାତ ଆଧୁନିକ କବି, ଚିତ୍ରକର, ଗବେଷକ 'ପ୍ରଥମ ପୁରୁଷ', 'ଅନ୍ୟସବୁ ମୃତ୍ୟୁ, 'ଯେ ଯାହାର ନିର୍ଜନତା', 'ଦେଶ କାଳ ପାତ୍ର', 'ଦିନଚର୍ଯ୍ୟା' ଇତ୍ୟାଦି ବହୁ ପୁସ୍ତକର ରଚୟିତା ଜଗନ୍ନାଥ ପ୍ରସାଦ ଦାସ ତେବେ ହେଉଛନ୍ତି ମୋର କିଶୋର ପ୍ରାଣକୁ ଅର୍ଦ୍ଧଶତାବ୍ଦୀରୁ ଊର୍ଦ୍ଧ୍ୱକାଳ ଧରି ଆଚ୍ଛନ୍ନ କରି ରହିଥିବା ସେହି 'ସ୍ତବକ' ପୁସ୍ତକର ରଚୟିତା ! ଦୁହେଁ ଏକ ଓ ଅଭିନ୍ନ !'

## = ହାତ ମିଳାଅ =

**ଶ୍ରୀ ଜଗନ୍ନାଥପ୍ରସାଦ ଦାସ**

ତମକୁ ଦେଖିଛି ବନ୍ଧୁ, ସହରର ରାଜପଥ ଧାରେ
ସଉଦାଗର ଅଫିସର ଟାଇପ ଏ ପାଉଣ୍ଡ,
ଟ୍ରାମ୍ ଓ ଟ୍ରେନ୍‌ରେ ପୁଣି ଦଳେ ଓ ବାହାରେ
ତମମାନ ଦପ୍ତରର ଚାମଗ୍ରନ ଶୋଷଯାଏ ପାଇବେ ।

ବନ୍ଧୁ, ମୁଁ ତମକୁ ଦେଖେ ନାମହୀନ ହୋଟେଲ ଭିତରେ
ହାତେଧର ଅଧାଦଗ୍ଧ ଗ୍' ଅଲ୍ ସେ ଦିନର ଖବରକାଗଜ
ସବୁଠାରୁ ଶସ୍ତା କେଉଁ ସିଗାରେଟ୍ ବହଳ ଧୂଆଁରେ
ତମେ ଜାଣ ଶୋଷି ଶୋଷି ସକାଳର ସମସ୍ତ ମଉଜ ।

ବେଳା ଅଭ୍ ଅବେଳାରେ, ଟାଣି ଟାଣି କ୍ଲାନ୍ତ ପାଦଦୁଇ
ବୁଦବ ଖାର୍ଲ୍ସ'ର ଦପରେ ବିଜ୍ଞାପନ ଖୋଜି ଖୋଜି ଯାଅ
ବୃଦ୍ଧର ସ୍ୱାର୍ଥେ କେତେ ଦାହୁଁ ତମେ ଯାଅ ଦେଇ
(ଅଫିସ୍‌ର ଡଦ୍ଧବନ୍ ଡକେ ହୁଏ ଯାହାର ଅଭାବ ।)

'ଝଙ୍କାର', ସପ୍ତମବର୍ଷ ଦ୍ୱିତୀୟ ସଂଖ୍ୟା, ମେ ୧୯୫୫

# ମୋର ନିଜର ସେଇ ଗାଁଆଟି

ଲେଖକ—ଲ୍ୟୁ ସନ୍

ଅନୁବାଦ—ଶ୍ରୀ ଜଗନ୍ନାଥ ପ୍ରସାଦ ଦାସ

ପ୍ରବଳ ଶୀତରେ ସାତ ଆଠ ଶହ ମାଇଲରୁ ବେଶି ବାଟ ଅତିକ୍ରମ କରି ମୁଁ ଗାଁକୁ ଫେରୁଥିଲି । ଏଇ ଗାଁକୁ ଛାଡ଼ିବାର ମୋର ହୋଇଯାଇଥିଲା କୋଡ଼ିଏ ବର୍ଷରୁ ଅଧିକ । ସେତେବେଳକୁ ଶୀତ ଦିନର ଅଧାଅଧି । ମୁଁ ଯେତେବେଳେ ଗାଁ ପାଖାପାଖି ହେଲି, ସେତେବେଳକୁ ଆକାଶ ଅନ୍ଧାର ହୋଇ ଯାଇଥାଏ; ଡଙ୍ଗାର ଫାଙ୍କ ବାଟେ ଥଣ୍ଡାପବନ ପଶି ଆସୁଥାଏ । ଗୋଟାଏ ଛିଦ୍ର ଦେଇ ମୁଁ ବାହାରକୁ ଅନେଇଲି-ମଇଳା ହଳଦିଆ ଆକାଶ ତଳେ ଗାଁଟା ଦିଗ୍‌ବଳୟର ସୀମାରେ ମିଶି ଯାଉଛି-ସେଥିରେ ଜୀବନର ସତ୍ତା ଜମା ନାହିଁ ।

ମତେ କେମିତି ଖରାପ ଖରାପ ଲାଗୁଥିଲା-ମୁଁ ଏ ଦୁଃଖକୁ ସହିପାରୁ ନ ଥିଲି । ମୁଁ ସବୁବେଳେ ଯାହାକୁ ଭାବେ, ଏ କ'ଣ କୋଡ଼ିଏ ବର୍ଷ ତଳର ସେଇ ଗାଁଟି ମୋର ! ମୁଁ ଯୋଉ ଗାଁ କଥା ଭାବେ, ସେ ଏମିତି ମୋଟେ ନୁହେଁ; ସେ ଏହାଠାରୁ ଅନେକ ସୁନ୍ଦର । ମୋର ମନେ ପଡୁଥିଲା ମୋ ଗାଁର ସୌନ୍ଦର୍ଯ୍ୟ କଥା କିନ୍ତୁ ଉପଯୁକ୍ତ ଉପମା ଦେଇ ମୁଁ ବର୍ଣ୍ଣନା କରି ପାରୁ ନ ଥିଲି-ମୁଁ ଭାଷା ଖୋଜି ପାଉ ନ ଥିଲି । ତାର ଧାରଣା ବୋଧହୁଏ, ମୋର ଗାଁଟି ଠିକ୍ ସେମିତି ଥିଲା, ଯେମିତି ଭାବରେ ମୁଁ ତାକୁ ଆଜି ଦେଖୁଥିଲି । ସେ ହୁଏତ ମୋଟେ ବଦଳି ନାହିଁ । ହୁଏତ ମୋର ମନଟା ଏଇ ଭିତରେ ଅନେକ ବଦଳି ଯାଇଥିଲା ।

ସତ କହିବାକୁ ଗଲେ, ଘରକୁ ଆସୁଥିବାରୁ ମନ ମୋର ବିଶେଷ ଭଲ ନ ଥିଲା । ଗାଁକୁ ଚିରଦିନ ପାଇଁ ବିଦାୟ ନେବାକୁ ମୁଁ ଘରକୁ ଯାଉଥିଲି । ଅନେକ ବର୍ଷ ଯାଏ ଆମେ ଆମ ପରିବାରର ସେଇ ପୁରୁଣା

'ଶାନ୍ତି ସମାଚାର', ସଂପାଦକ ଚିନ୍ତାମଣି ପାଣିଗ୍ରାହୀ
ପ୍ରଥମବର୍ଷ ଚତୁର୍ଥ ସଂଖ୍ୟା, ୧୯୫୪

ସେ ସମୟରେ ଜଗନ୍ନାଥ ପ୍ରସାଦଙ୍କ କବିତାସବୁ ମୁଖ୍ୟତଃ ପ୍ରକାଶିତ ହୋଇଥିଲା ଡଗର, ପ୍ରଜାତନ୍ତ୍ର, ଦୈନିକ ଆଶା ତଥା ବମ୍ବେରୁ ପ୍ରକାଶିତ 'କୁଙ୍କୁମ'ରେ । ସାମ୍ୟବାଦରେ ବିଶ୍ୱାସ କରୁଥିବା ବା ରୁଚି ରଖୁଥିବା ଛାତ୍ରଛାତ୍ରୀମାନଙ୍କର ସେତେବେଳେ ଜନପ୍ରିୟ ପତ୍ରିକାଟିଏ ଥିଲା 'ଆଗାମୀ' । ତାହାର ସଂପାଦନାମଣ୍ଡଳୀର ସଭାପତି ଥିଲେ ମନୋଜ ଦାସ; ଅନ୍ୟତମ ସଭ୍ୟ ଥିଲେ ଜଗନ୍ନାଥ ପ୍ରସାଦ । ପରବର୍ତ୍ତୀ ସମୟରେ 'ଦିଗନ୍ତ', 'ଦ ହେରିଟେଜ୍' ପତ୍ରିକାର ସଂପାଦନା ତଥା ସାମ୍ୟବାଦ ଓ ଅରବିନ୍ଦ ଦର୍ଶନର ପ୍ରବକ୍ତାଭାବରେ ମନୋଜ ଦାସ ବିଶେଷ ପରିଚିତ ହୋଇଥିଲେ । ପତ୍ରପତ୍ରିକାର ସଂପାଦନା ବା କୌଣସି ବାଦ/ଆଭିମୁଖ୍ୟ ପ୍ରଚାର ବା ପ୍ରସାରରେ ଆପାତତଃ ଆଗ୍ରହୀ ହୋଇ ନ ଥିଲେ ଜଗନ୍ନାଥ ପ୍ରସାଦ ।

୧୯୫୫ରେ କଟକ ଛାଡ଼ିଲା ବେଳକୁ ନୂତନ ପିଢ଼ିର ଅନ୍ୟତମ ମୁଖ୍ୟ କବି ଭାବରେ ଜଗନ୍ନାଥ ପ୍ରସାଦଙ୍କ ସୁନାମ ଓଡ଼ିଶାରେ ବ୍ୟାପି ସାରିଥିଲା । ୧୯୫୫ ଜାନୁଆରୀ 'ଆଗାମୀ' ପତ୍ରିକାରେ କବି, ସମାଲୋଚକ ଓ ଅଧ୍ୟାପକ ଚିନ୍ତାମଣି ବେହେରାଙ୍କ ମନ୍ତବ୍ୟଟି ଏ ପ୍ରସଙ୍ଗରେ ଉଦ୍ଧାର କରାଯାଇପାରେ :

'ଅବଶ୍ୟ ଆଧୁନିକ କବିତା ରାଜ୍ୟରେ ଅନେକ ପ୍ରକାରର ଭାବଧାରା ପ୍ରଚଳିତ । ତଥାପି ଅଧିକାଂଶ ଆଧୁନିକ ଶିଳ୍ପୀ ନିଜ ନିଜ ଧାରାରେ ବହୁ ସାର୍ଥକ କବିତା ସୃଷ୍ଟି କରୁଛନ୍ତି । ଏହି ଆଧୁନିକ କବିଙ୍କ ମଧ୍ୟରେ କେତେକ ପ୍ରୟୋଗବାଦୀ, କେତେକ

ସ୍ୱଭାବବାଦୀ, କେତେକ ପ୍ରଗତିବାଦୀ କବି ଅଛନ୍ତି ଏବଂ ସମସ୍ତେ ନିଜ ନିଜ ବାଟରେ ନିଜ ନିପୁଣତାର ପରିଚୟ ଦେଉଛନ୍ତି । ପ୍ରବୀଣ ଓ ତରୁଣ ବହୁ କବିଙ୍କ ମଧ୍ୟରେ ଆଜି (ସବୁଜ ଯୁଗର ଶିଳ୍ପୀଙ୍କୁ ବାଦ୍ ଦେଇ) ଅନନ୍ତ ପଟ୍ଟନାୟକ, ବିନୋଦଚନ୍ଦ୍ର ନାୟକ, ଜ୍ଞାନୀନ୍ଦ୍ର ବର୍ମା, କୁଞ୍ଜବିହାରୀ ଦାଶ, ଜାନକୀ ମହାନ୍ତି, ବେଣୁଧର ରାଉତ, ମନୋଜ ଦାସ, ଉମାଶଙ୍କର ପଣ୍ଡା, ଜଗନ୍ନାଥ ପ୍ରସାଦ ଦାସ, ରମାକାନ୍ତ ରଥ, କୁମାରୀ ତୁଳସୀ ଦାସ, କୃଷ୍ଣ ଚରଣ ବେହେରା ଓ ଦୁର୍ଗାପ୍ରସାଦ ପରିଡ଼ା ପ୍ରଭୃତି ସ୍ରଷ୍ଟାମାନଙ୍କର ନାମ ଏ ପ୍ରସଙ୍ଗରେ ଉଲ୍ଲେଖଯୋଗ୍ୟ ।'

୧୯୭୨ ମାର୍ଚ୍ଚ ସଂଖ୍ୟା 'ନବରବି' ପତ୍ରିକାରେ ସହପାଠୀ କବି ବିବେକାନନ୍ଦ ଜେନା 'ପ୍ରଥମ ପୁରୁଷ : ଏକ ବ୍ୟକ୍ତିଗତ ଦୃଷ୍ଟିପାତ' ସମାଲୋଚନାରେ ପଶ୍ଚାଦ୍‌ଚାରଣ କରି ଲେଖିଥିଲେ :

'...ବହୁତ ଅଳ୍ପ ଲୋକ ଜାଣନ୍ତି ଯେ ଏକ କାଳରେ ଜଗନ୍ନାଥ ପ୍ରସାଦ ତାଙ୍କର ଜଣେ ସମସାମୟିକ ତରୁଣ କବି ରମାକାନ୍ତ ରଥଙ୍କଠାରୁ ବେଶୀ ପ୍ରତିଭାଶାଳୀ କବି ଥିଲେ ବୋଲି ଅନେକଙ୍କ ଧାରଣା ।'

(ଖଗେଶ୍ୱର ମହାପାତ୍ର ସମ୍ପାଦିତ 'କିଛି ବର୍ଷା କିଛି ରାସ୍ତା କିଛି ନିର୍ଜନତା',୧୯୮୧, ପୃଷ୍ଠା-୪୩)

କଟକ ଛାଡ଼ିବାର ପ୍ରାୟ କୋଡ଼ିଏ ବର୍ଷ ପରେ ଜଗନ୍ନାଥ ପ୍ରସାଦ 'କଟକ' ଶୀର୍ଷକ କବିତାଟିଏ ରଚନା କଲେ – କଟକ ସ୍ମୃତିର ଆଲୋଡ଼ନରେ । କବିତାଟିର ଉଦ୍ଧୃତି :

### କଟକ

ସବୁ ମନେପଡ଼େ ଏଠାକୁ ଆସିଲେ
ସବୁ କିଛି ମନେପଡ଼େ
ନୋଟ ଖାତାରେ ପ୍ରେମ କବିତା
ଲେଖୁଥିବାର ଅଳସ ଦିନମାନ
ପକେଟ ଭର୍ତ୍ତି ବସନ୍ତ ପବନ
ଓ ଆକାଶକୁ ଚାହିଁ ହଜିଯିବାର ବେଳ
ଡାହାଣୀ ଖରାକୁ ହାତ ମୁଠାରେ ନେଇ
ଅନ୍ୟମାନଙ୍କୁ ସମର୍ପି ଦେବାର ଦିନ

ସମସ୍ତେ ମନେ ପଡ଼ନ୍ତି ଚିହ୍ନା ଚିହ୍ନା
ଅନେକ ଦିନ ତଳର ମୁହଁସବୁ
ଯେଉଁମାନେ ଅଟକିଗଲେ
ଚିତ୍ରିତ ଦିନମାନଙ୍କର ସମ୍ମୋହନରେ
ନଈକୂଳର ବେଞ୍ଚ ଉପରେ ବସି
ଇନ୍ଦ୍ରଧନୁକୁ ଦେଖୁ ଦେଖୁ
ଯେଉଁମାନେ ପଛରେ ରହିଗଲେ
ବାଲିଯାତ୍ରାର ଲୋକଗହଳିରେ
ରଂଗୀନ ରୁମାଲ ଉଡ଼ାଇବା ବେଳେ
ଯେଉଁମାନେ ହଜିଗଲେ
ଆଖିରେ ଆଖିଏ ଲୁହ ନେଇ
ସିନେମା ହଲରୁ ବାହାରିବାର
ଉଦାସ ମୁହୂର୍ତ୍ତମାନଙ୍କରେ

ଆଜି ଏଠାରେ ଆଗକୁ ଯିବାବେଳେ
ରିକ୍‌ସାକୁ ଉଡ଼ୁଥିବା ପଣତରେ
ବାନ୍ଧିହୋଇ ରହିଯାଏ
ପଛରେ ଛାଡ଼ି ଦେଇ ଆସିଥିବା
ରଙ୍ଗବେରଙ୍ଗ ଅନୁଭବ ସବୁ
ରାସ୍ତାକୁ ବନ୍ଦ କରିଦିଏ
ଲେଭେଲକ୍ରସିଂର ଫାଟକ

ଯାନବାହନର ଭିଡ଼ ଭିତରେ
ଗତିରୋଧ ହୋଇଯାଏ ଚେତନାର
ଆଖି ଅଟକିଯାଏ ରାସ୍ତାର
ବଦଳି ଯାଉଥିବା ଉପକୂଳରେ
ମନ ମାନିନିଏ ଚୁପ୍‌ଚାପ୍
ବୟସର ବାଧ୍ୟବାଧକତା

ସବୁ କିଛି ପରିଚିତ ଜଣାପଡ଼େ
ନଈବନ୍ଧକୁ ଟପି କେଉଁପରି
ଝରକା ଭିତରକୁ ସୂର୍ଯ୍ୟାଲୋକ ଆସେ
ପାଦ ଚିପି ଚିପି
ଭିଖାରି ରାସ୍ତା କରରେ ବସିଥାଏ
ଆକାଶରେ ମେଘର
ଛିଣ୍ଡାକନା ଆଡ଼କୁ ଅନାଇ
କଟିଯାଇଥିବା ଗୁଡ଼ି ଆସି ଓହ୍ଲାଏ
ଭଙ୍ଗା ଛାତ ଉପରେ
ମନ୍ଦିରର ପାଦୁକା ବହିଆସି
ମିଶିଯାଏ ନର୍ଦ୍ଦମାର ସ୍ରୋତରେ
ଉଠାଦୋକାନର ଭିଡ଼ ଭିତରେ
ନ୍ୟାୟ କିଣାବିକା ହୋଇଯାଏ
ବର୍ଷାରେ ଧୋଇଯାଏ
ଚଣ୍ଡୀ ମନ୍ଦିରର ପୂଜା ପାଠ
କଲେଜ ଛକ ଚା ଦୋକାନରେ
ଆଲୋଚନା ହଠାତ ବନ୍ଦ ହୁଏ

ଖବରକାଗଜବାଲାର ଡାକକୁ ଲିଭାଇ
ପ୍ରଳୟର ଆତଙ୍କ ଆସେ
କାଠଯୋଡ଼ିର କୂଳ ଉଛୁଳାଇ

ହସ୍‌ପିଟାଲ ରାସ୍ତା ଛାଡ଼ି
ବାହାରକୁ ଯିବାବେଳେ
ଛକ ଉପରେ ପାଦ ଅଟକିଯାଏ
ଏଠାରୁ ସବୁ ରାସ୍ତା ବିସ୍ମୃତି ଆଡ଼କୁ
ବାହାରକୁ ଯାଉଥିବା ଲୋକ
ଆଉ ପଛକୁ ଅନାଏ ନାହିଁ
ମହାନଦୀରୁ କିଛି ପାଣି ଉଠାଇ
ଆଂଜୁଳାରେ ନେଇ ପୂର୍ବପୁରୁଷଙ୍କୁ
ସମର୍ପଣ କରିଦିଏ

ଖରାଦିନ ଯାଇ କେତେବେଳେ ମିଶିଯାଏ
ଅଦିନ ବର୍ଷାର ଆର୍ଦ୍ର ଅନ୍ତରଙ୍ଗତାରେ
ବଡ଼ୀଖୁଣ୍ଟର ବୟସ ବଢୁଥାଏ
ଭୁଲିଆସୁଥିବା ସ୍ମୃତିସବୁ
ଏଇଭଳି ଲୁଚକାଳି ଖେଳୁଥାନ୍ତି
ଗଳିମାନଙ୍କର ଗୋଲକଧନ୍ଦାରେ
ଦୁଇ ନଈର ଆଶ୍ଳେଷ ଭିତରେ
ନିର୍ବିକାର ବସିରହିଥାଏ ସହର
ସଂସାର ଏକା ଭଳି ରହିଥାଏ
ଇତିହାସ ବଦଳି ବଦଳି ଯାଏ

(ଆହ୍ନିକ, ୧୯୯୦)

ଗୋପବନ୍ଧୁଙ୍କ ଭଳି ମହାନଦୀ ହିଁ କଟକର ଆବରଣ ବୋଲି ଜଗନ୍ନାଥ ପ୍ରସାଦ କଳ୍ପନା କରି ନାହାନ୍ତି । ତାଙ୍କ ଭାଷାରେ ଏହା 'ଦୁଇ ନଈର ଆଶ୍ଳେଷ' – ଗୋଟିଏ ଦିଗରେ ମହାନଦୀ, ଅନ୍ୟ ଦିଗରେ କାଠଯୋଡ଼ି – କଟକର ସୀମା ଓ ପରିସର ଉଭୟର ପ୍ରେମରେ ବନ୍ଧିତ । କଟକର ଏପରି ଚିତ୍ରକଳ୍ପଟିଏ ସୃଷ୍ଟି କଲାବେଳେ ଜଗନ୍ନାଥ ପ୍ରସାଦ କ'ଣ ସଚେତନ ଥିବେ ଯେ, ଏହି ଚିତ୍ର ମଧ୍ୟରେ ସେ ସୂଚନା ଦେଇଛନ୍ତି ନିଜ କଟକ ଜୀବନର ଦିନଗୁଡ଼ିକର ? ଗୋଟିଏ ଦିଗରେ ବିଦ୍ୟା ଅଧ୍ୟୟନର ଶୃଙ୍ଖଳିତ କାର୍ଯ୍ୟକ୍ରମ, ଅନ୍ୟ ଦିଗରେ କବିତା ରଚନା ତଥା ସୃଜନଶୀଳତାର ମୁକ୍ତି ଓ ସ୍ୱପ୍ନ – ଏହି ଦୁଇ ଧାରାର ଆଶ୍ଳେଷ କ'ଣ ନ ଥିଲା ତାଙ୍କ ନିଜ ଜୀବନର ପରିଚୟ ?

---

# ସଂପର୍କର ପରିସର

**୧**୯୫୨ରେ ଖ୍ରୀଏଷ୍ଟ କଲେଜରେ ଛାତ୍ର ଥିବା ସମୟରେ ଜଗନ୍ନାଥ ପ୍ରସାଦ ଦିନେ କେତେଜଣ ବଂଧୁଙ୍କ ସହିତ ବାହାରିଲେ ଧବଳେଶ୍ୱର । ମହାନଦୀ ମଧ୍ୟରେ ଏହା ଏକ ଟାପୁ – ସ୍ଥାନୀୟ ଆରାଧ୍ୟ ଦେବତା ଶିବଙ୍କ ନାମରେ ନାମିତ । ପ୍ରତିବର୍ଷ ବଡ଼ଓଷାରେ ଏଠାରେ ଏକ ମେଳା ଅନୁଷ୍ଠିତ ହୁଏ । ତୀର୍ଥସ୍ଥାନ ଭାବରେ ଏହାର ସୁଖ୍ୟାତି ।

ଜଗନ୍ନାଥ ପ୍ରସାଦଙ୍କର କିନ୍ତୁ ଉଦ୍ଦେଶ୍ୟ ନ ଥିଲା ଧର୍ମତୀର୍ଥ ଧବଳେଶ୍ୱର ଦର୍ଶନ । ସେ ଏହାକୁ ମନେ କରିଥିଲେ ଏକ ସାହିତ୍ୟ ତୀର୍ଥ । ସେହିଠାରେ 'ନିଭୃତ ନିଳୟ'ରେ ନୀରବ ସାହିତ୍ୟ ସାଧନା କରୁଥିଲେ ଶଶିଭୂଷଣ ରାୟ – ଓଡ଼ିଆ ସାହିତ୍ୟର ପ୍ରମୁଖ ପ୍ରାବନ୍ଧିକ; କବିବର ରାଧାନାଥ ରାୟଙ୍କ ପୁତ୍ର । ସେତେବେଳକୁ ତାଙ୍କର ବୟସ ଅଣାଅଶୀ; ଦୃଷ୍ଟିଶକ୍ତି ନିହାତି କ୍ଷୀଣ ।

ଜଗନ୍ନାଥ ପ୍ରସାଦଙ୍କ ଯୋଜନା ଥିଲା ଶଶିଭୂଷଣଙ୍କ ସହିତ କିଛି ସମୟ କଟାଇବେ, ତାଙ୍କ ହସ୍ତାକ୍ଷରର ନମୁନା ସଂଗ୍ରହ କରିବେ, ତାଙ୍କ ସହିତ ଫଟୋଟିଏ ଉଠାଇବେ ।



ଧବଳେଶ୍ୱର ୧୯୫୨
ପଛ ଧାଡ଼ିରେ ଡାହାଣରୁ ତୃତୀୟ

ନିଭୃତ ନିଳୟରୁ ଫେରି ଜଗନ୍ନାଥ ପ୍ରସାଦ ଲେଖିଲେ କବିତାଟିଏ – ‘ଶଶିଭୂଷଣ’ । ଏହି କବିତା ରଚନାର ପ୍ରାୟ ବର୍ଷକ ପରେ ଶଶିଭୂଷଣଙ୍କର ପରଲୋକ ହୋଇଥିଲା । କବିତାଟି ପ୍ରକାଶିତ ହୋଇଥିଲା ‘ପ୍ରଜାତନ୍ତ୍ର’ (୬ ସେପ୍ଟେମ୍ବର, ୧୯୫୩)ରେ । ସଂପୂର୍ଣ୍ଣ କବିତାଟି ଏହିପରି :

## ଶଶିଭୂଷଣ

[ ପୀଡ଼ିତାବସ୍ଥାରେ ଲିଖିତ ]

ଶ୍ରୀ ଜଗନ୍ନାଥପ୍ରସାଦ ଦାସ

ନାହିଁ ଜନପଦ ନାହିଁ ଯହିଁ ଜନ ମାନବର କୋଳାହଳ
ଜୀବନ ଯେଉଁଠି ଭୁଲି ଯାଇଅଛି ବିଶ୍ୱର ହଳ ହଳ
ନିଭୃତ ସେଇ ଦୂର ପ୍ରାନ୍ତରର ନିଭୃତ ଏକ କୋଣେ,
ନୀରବେ ସ୍ୱର୍ଗ-ଆରାଧନା କରେ ନୀରବ ସାଧକ ଜଣେ ।
ଜନ ନୟନର ଅଗୋଚରେ ଯହିଁ ବନର ମଲ୍ଲୀ ଫୁଟେ
ମୃଦୁ ସମୀରଣେ ସ୍ନିଗ୍ଧ ମଧୁର ସୌରଭ ଯାହିଁ ଛୁଟେ ।
ବ୍ୟୋମନେ ଯେଉଁଠି ମେଘର ଅନ୍ତେ ଚନ୍ଦ୍ର ଉଠଇ ହସି
ସାହିତ୍ୟାକାଶ ‘ଶଶୀ’ଏ ସେ ଯେ ତହିଁ ସାଧନା କରଇ ବସି ।
ସଭ୍ୟତା ଯାର ଅମରଦାନରେ ଦେଇନାହିଁ ସମ୍ମାନ
ସମାଜ ଯାହାର ପୂଜା କରିନାହିଁ ଧୂପଧୂନ ଅବଦାନ ।
ଅସହାୟ କରି ଏ ଜାତି ଯାହାରେ କରିଛି ନିର୍ବାସିତ
ଭୁଲି ଯାଇଅଛି ଯାହାର ନିଜସ୍ୱ ଶାଶ୍ୱତ ବାଣୀ-ଗୀତ,
ନିର୍ଜନେ ବସି ଅଛି ସେ ଶିଳ୍ପୀ ଦେଖଇ ମରଣ ପଥ
କର୍ମ ବହୁଳ ଜୀବନେ ତାହାର ମରଣର ଅଭିଘାତ ।
ମଣିଷ ନ ସେବେ ତାହାର ମହାନ ପଦର ପରଶ ବାଞ୍ଛି
ନିଭୃତ ସେଇ ନିଜସ୍ୱ ଜାତିର ତୀର୍ଥ ହୋଇଛି ଆଜି ।

(* ଗତ ତା ୪।୯।୫୩ରିଖ ଭାଦ୍ରକୃଷ୍ଣ ଦ୍ୱାଦଶୀ ଶୁକ୍ରବାର ସକାଳ ଘ ୯।୧୫ ମିନିଟ୍‌ରେ ଶ୍ରୀଯୁକ୍ତ ଶଶିଭୂଷଣ ରାୟଙ୍କର ପରଲୋକ ଘଟିଛି)

—ସଂପାଦକ

ଜଗନ୍ନାଥ ପ୍ରସାଦଙ୍କ 'ଶଶିଭୂଷଣ' କବିତାଟି ପ୍ରକାଶିତ ହେବା ପୂର୍ବରୁ କବି କୁଞ୍ଜବିହାରୀ ଦାଶଙ୍କର ଶଶିଭୂଷଣଙ୍କ ସଂପର୍କରେ କବିତାଟିଏ ପ୍ରକାଶିତ ହୋଇଥିଲା । ପୁରୀରେ ଛାତ୍ର ଥିବା ସମୟରେ ରାମକୃଷ୍ଣ ମିଶନ ପାଠାଗାରରେ 'ସହକାର' ପତ୍ରିକାର କୌଣସି ସଂଖ୍ୟାରେ ମୁଁ ତାହା ପଢ଼ିଥିଲି ଓ ତାହାର କେତେ ଧାଡ଼ି ମୋ ମନରେ ଛପି ଯାଇଥିଲା । ଯେପରି–

ଗୋଟିଏ ଆଖି ଗଲାଣି ଲିଭି ଆର ଆଖିଟି ଅସ୍ତ ପ୍ରାୟ,
ତଥାପି ତୁମ କଲମ ଚାଲେ ଧନ୍ୟ ଶଶିଭୂଷଣ ରାୟ ...

ହୀରାକୁଦରେ ଫଳିବ ସୁନା ଢୁଢୁମା ଦେବ ସୁନାରେ ଛାଇ
କିନ୍ତୁ ଶଶିଭୂଷଣ ରାୟ ଫେରିବ ନାହିଁ ଫେରିବ ନାହିଁ ।

ଶଶିଭୂଷଣଙ୍କ ସଂପର୍କରେ କବିତାଟି ଲେଖିଲା ବେଳକୁ କୁଞ୍ଜବିହାରୀଙ୍କ ବୟସ ପ୍ରାୟ ଚାଳିଶି ; ଜଗନ୍ନାଥ ପ୍ରସାଦଙ୍କର ମାତ୍ର ସତର । ଅପରିଣତ ବୟସରେ ମଧ ପ୍ରବୀଣ କବି ଲେଖକମାନଙ୍କ ସହିତ ସଂପର୍କ ପ୍ରତିଷ୍ଠାର ଆଗ୍ରହ ଜଗନ୍ନାଥ ପ୍ରସାଦଙ୍କ ସୃଜନଶୀଳ ବ୍ୟକ୍ତିତ୍ୱର ଏକ ଉଜ୍ଜ୍ୱଳ ଦିଗ । ସାହିତ୍ୟ ସଂଗଠନ, ଅନୁଷ୍ଠାନ – ବିଶେଷତଃ କବି, ଲେଖକ, କଳାକାରମାନଙ୍କ ସହିତ ବ୍ୟକ୍ତିଗତ ସଂପର୍କ ରକ୍ଷା କରିବାରେ ସେ ଗୁରୁତ୍ୱ ଦେଇ ଆସିଛନ୍ତି ସବୁ ସମୟରେ । ଓଡ଼ିଶାର, ଭାରତର ଓ ବିଦେଶର – ଉଭୟ ପ୍ରବୀଣ ଓ ତରୁଣ ସୃଜନଶୀଳ ବ୍ୟକ୍ତିମାନଙ୍କ ସହିତ ତାଙ୍କ ସଂପର୍କର ପରିସର ନିଶ୍ଚିତଭାବରେ ବ୍ୟାପକ । ସତ୍ୟଜିତ୍ ରାୟ (ଚଳଚ୍ଚିତ୍ର ନିର୍ଦ୍ଦେଶକ), ମୁଲ୍କ୍ ରାଜ୍ ଆନନ୍ଦ୍ (ଔପନ୍ୟାସିକ), ଗୁଲ୍‌ଜାର୍ (କବି ଓ ଗୀତିକାର), କପିଳା ବାତ୍ସାୟନ (କଳା ସମାଲୋଚକ), ଜୋଆନା ୱିଲିୟମ୍‌ସ୍ (କଳା ସମାଲୋଚକ), ଏବର୍‌ହାର୍ଡ୍ ଫିସର୍ (କଳା ସମାଲୋଚକ), ରାମଗୋପାଳ ବଜାଜ୍ (ନାଟ୍ୟ ନିର୍ଦ୍ଦେଶକ), ବ୍ରଜନାଥ ରଥ (କବି), ଶରତ ପୂଜାରୀ (ଅଭିନେତା), ଦିନନାଥ ପାଠୀ (ଚିତ୍ରଶିଳ୍ପୀ ଓ ଲେଖକ)ଙ୍କଠାରୁ ତରୁଣ କବି ମନୋଜ ମେହେର, ବାସୁଦେବ ସୁନାନୀ ଓ ସୁନନ୍ଦା ପ୍ରଧାନ – ସବୁ ବର୍ଗ ଓ ପିଢ଼ିର ସୃଜନ ପ୍ରତିଭାଙ୍କ ସହିତ ତାଙ୍କର ସଂପର୍କ ଥିଲା ବା ଅଛି । ରାଜନୀତି, ପ୍ରଶାସନ, ଅଧ୍ୟାପନା, ସମାଜସେବା – ବିଭିନ୍ନ କ୍ଷେତ୍ରରେ ପ୍ରତିଷ୍ଠିତ / ସ୍ୱଳ୍ପ ପରିଚିତ ଅନେକଙ୍କ ସହିତ ତାଙ୍କର ସୌହାର୍ଦ୍ଦ୍ୟ ଓ ଅନ୍ତରଙ୍ଗତା ସୁବିଦିତ ।

ବିଗତ କେତେ ବର୍ଷ ଧରି ମୁଁ ଲକ୍ଷ୍ୟ କରି ଆସିଛି – ଜଗନ୍ନାଥ ପ୍ରସାଦ ଯେତେବେଳେ ଦିଲ୍ଲୀରୁ ଭୁବନେଶ୍ୱର ଆସନ୍ତି, ତାଙ୍କୁ ଭେଟିବା ପାଇଁ ଅନେକେ ଆଗ୍ରହୀ ହୁଅନ୍ତି । ପ୍ରବୀଣ ଓ ତରୁଣ – ଉଭୟଙ୍କ ସହିତ କିପରି ସଂପର୍କ ରକ୍ଷା କରାଯାଏ, ତାହାର କୌଶଳଟି ତାଙ୍କୁ ଜଣାଅଛି ନିଶ୍ଚୟ । ତେବେ ତାଙ୍କ ବିରୁଦ୍ଧରେ ଗୋଟିଏ ଅଭିଯୋଗ ମୁଁ ବାରମ୍ବାର ଶୁଣେ, ଜେ. ପି. ଭୁବନେଶ୍ୱରରେ ଖୁବ୍ କମ୍ ଦିନ ରହନ୍ତି । ତେଣୁ ତାଙ୍କ ସହିତ ଆଳାପ ଆଲୋଚନା ପାଇଁ ଅନେକେ ସୁଯୋଗ ପାଆନ୍ତି ନାହିଁ ।

ଜଗନ୍ନାଥ ପ୍ରସାଦଙ୍କ ବନ୍ଧୁତାର ପରିସର କିପରି ଆନ୍ତରିକ, ତାହାର ପ୍ରମାଣ ତାଙ୍କର ଦୁଇଜଣ ବନ୍ଧୁଙ୍କ ମନ୍ତବ୍ୟ । କଥାଶିଳ୍ପୀ ତଥା ଇଞ୍ଜିନିୟର ସୁଧୀର କୁମାର ବିଜୟେନ୍ଦ୍ର ନାରାୟଣ(ଜାପାନୀ)ଙ୍କ ଭାଷାରେ :

'କଲେଜରେ ପଢ଼ିବା ବେଳକୁ ଭଲ ପଢୁଥିବା ଛାତ୍ର ସବୁ ଦିନରାତି ଏଡ଼େ ମୋଟା ମୋଟା ବହି ଧରି ରାତିରାତି ଘୋଷି ହେଉଥାଆନ୍ତି; କ'ଣ ନା ଆଇ.ଏ.ଏସ୍. ପାଇଁ ପ୍ରିପାରେସନ୍ ଚାଲିଚି । ସେଇ ଚାକିରିଟା କୁଆଡ଼େ ସରକାରୀ ଦପ୍ତରର ରାଜଗାଦି । ଥରେ ବସିଗଲେ ଜୀବନର ସବୁପ୍ରକାର ସୁଖସୁବିଧା ଆପେ ଆପେ ମିଳିଯାଏ । ଏଣୁ ପ୍ରତ୍ୟେକ ଛାତ୍ରର ଜୀବନର ଲକ୍ଷ୍ୟ ହେଲା ଆଇ.ଏ.ଏସ୍. ବା ପଛକୁ ଲାଗିଥିବା ଆଇ.ପି.ଏସ୍. ବା ଏଲାଏଡ୍ ଚାକିରି ।

'ମୋ ଚାକିରି ଆରମ୍ଭ ହେଲା ୧୯୬୨-୬୩ରେ । ଅନେକ ବର୍ଷ ପରେ ଶୁଣିବାକୁ ପାଉ, 'ଜଣେ ସିନିଅର ଆଇ.ଏ.ଏସ୍. ଅଫିସର୍ ଚାକିରି ଛାଡ଼ିଦେଲେ – ଦିଲ୍ଲୀରେ ଲେଖାଲେଖି ପେଣ୍ଟିଂ ଇତ୍ୟାଦିରେ ମନୋନିବେଶ କରିବେ ।' ସେ ଆମରି ଡିପାର୍ଟମେଣ୍ଟରେ ଆଗେ ସେକ୍ରେଟାରୀ ଥିଲେ । ଏଣୁ ଆମ ଭିତରେ ଆଲୋଚନାଟା ଆହୁରି ଗଭୀର ।

'କିଏ ଏହି ଅବିଶ୍ୱାସ୍ୟ ଲୋକଟା ?' ତାଙ୍କ ନାଁ ଜାଣିଲୁ ଜେ. ପି. ଦାସ ।

'ସାହିତ୍ୟ ଓ କଳାରେ ଆଗ୍ରହ ରଖିଥିବା ମନ ନେଇ ମୋର ଏଇ ଲୋକଟି ପ୍ରତି କୌତୂହଳ ଜାତ ହେବା ସ୍ୱାଭାବିକ । ଏଇ ଲୋକଟି ପ୍ରତି ଏକ ବିଶେଷ ଭକ୍ତିମିଶ୍ରିତ ଶ୍ରଦ୍ଧା ଜମି ଜମି ଆସିଥିବା ବେଳେ, ଭୁବନେଶ୍ୱରରେ କୌଣସି ଏକ ବୈଠକିରେ (ସେ ସଭା ସମିତିରେ ବିଶ୍ୱାସ ରଖନ୍ତି ନାହିଁ) ପ୍ରଥମେ ଦେଖାହୁଏ ତାଙ୍କ ସହ । ତାଙ୍କ ପତଳା ଶରୀରକୁ ଜିନ୍ସ ପେଣ୍ଟ, ଗଞ୍ଜି ଦେଖି ମୁଁ ପ୍ରଥମେ କଲେଜ ପିଲା ଭାବିଥିବା ଲୋକଟି ଯେ ଜେ. ପି., ମୁଁ ବିଶ୍ୱାସ କରିପାରି ନ ଥିଲି । ସେ ଦୁଇଦିନ ତାଙ୍କ ପଛେ ସବୁ ମିଟିଂ, କ୍ଲବ ଘୂରିଲି – ଲାଙ୍ଗୁଡ଼ ପରି ରହି ତାଙ୍କ କଥାବାର୍ତ୍ତା ଢଙ୍ଗଢାଙ୍ଗରେ ମୁଗ୍ଧ ହୋଇଯାଇଥିଲି ।

'ଓଡ଼ିଶାର କରଣ ହିସାବରେ ଖୋଜିଲେ ବହୁ ସଂପର୍କ ବାହାରି ପାରନ୍ତା – ପରେ ବାହାରିଲା ମଧ୍ୟ । ଜେ. ପି.ଙ୍କ ସହ କିନ୍ତୁ କରଣିଆ ସଂପର୍କର ଖିଅ ନ ଥିଲା – ଥିଲା ନିଛକ, ପରସ୍ପରକୁ ବୁଝିବାର ଏକ ଅନ୍ତରଙ୍ଗତା । ମୁଁ କବିତା, ଗଳ୍ପ, ନାଟକ ଓ କଳାରେ ଅନୁରାଗ ରଖେ, ପଢ଼େ, ଆଲୋଚନାରେ ଯୋଗ ଦିଏ, ବେଳେବେଳେ ଗପ ଲେଖେ ଏବଂ ଏଇ ସାହିତ୍ୟ ମାଧ୍ୟମରେ ତାଙ୍କୁ ଅଧିକ ଚିହ୍ନିବାର ସୁଯୋଗ ପାଏ । ଶ୍ରଦ୍ଧା ବଢ଼ି ବଢ଼ି ଯାଏ । ସେ ବି ହୁଏତ ମୋ ଅନାବିଳ ଶ୍ରଦ୍ଧାର ସ୍ପର୍ଶ ପାଆନ୍ତି – ଏପରି ହେଲା ଯେ ଜେ.ପି.ଙ୍କ ଭୁବନେଶ୍ୱର ପ୍ରୋଗ୍ରାମ ହେଲେ ମୋ ପାଖକୁ ମଧ୍ୟ ସେ ଖବର ଦିଅନ୍ତି ଓ ମୋ ପାଇଁ ଘଣ୍ଟେ ଦି'ଘଣ୍ଟା ସମୟ ଖାଲି ରଖିଥାଆନ୍ତି ।

'ସବୁଠାରୁ ବଡ କଥା ହେଲା – ସେ ତାଙ୍କ ଭୁବନେଶ୍ୱର ରହଣି ସମୟଟାକୁ ଘଣ୍ଟା ମିନିଟ୍‌ରେ ନିର୍ଦ୍ଧାରଣ କରି ରଖିଥାଆନ୍ତି । ଏୟାରପୋର୍ଟରେ ଓ୍ୱାହ୍ଲାଇ ପୁଣି ଫେରିବା ପର୍ଯ୍ୟନ୍ତ ସକାଳୁ ସଂଧ୍ୟାର ଘଣ୍ଟାଓ୍ୱାରି କାମ ଆସିବା ପୂର୍ବରୁ ଠିକ୍ ହୋଇ ସାରିଥାଏ, ଆଉ ଏଠି ଆସିଲେ ତାର ବ୍ୟତିକ୍ରମ ହୁଏ ନାହିଁ । ତାରି ଭିତରେ ସଭାସମିତି, ବହି ଆଲୋଚନା, ଦେଖାସାକ୍ଷାତ୍, ଖିଆପିଆ, ନାଚଗୀତ ସହ

ବନ୍ଧୁବାନ୍ଧବଙ୍କ ପାଇଁ ସମୟ ବଣ୍ଟା ହୋଇଯାଇଥାଏ । ସେଇଥିପାଇଁ ବୋଧହୁଏ ତାଙ୍କ ମୁହଁରେ ସବୁବେଳେ ଏକ ସନ୍ତୋଷର ଚିହ୍ନ ଦେଖିବାକୁ ମିଳେ । ସେଇ ସ୍ୱଚ୍ଛ ରହଣି ଭିତରେ ଦୁଇ ତିନିଥର ଦେଖାହୁଏ ବିଭିନ୍ନ ବୈଠକ, ସଭାରେ ଆଉ ସେଇ ସମୟ ଭିତରେ ମୋ ଭିତରେ ସୃଷ୍ଟି ହୁଏ ମୋ ନିଜ ବିରୁଦ୍ଧରେ ଦୋଷାରୋପ – ମୁଁ କାହିଁକି ଏମିତି ଚାକିରି ଛାଡ଼ି ପାରିଲି ନାହିଁ – ମୋ ମନ ଯାହା ଯେତେବେଳେ ଇଚ୍ଛା କରୁଚି ?

'ଏଇଠି ଅନୁଭବ କଲି ଆଇ.ଏ.ଏସ୍. ଚାକିରିକୁ ତୁଚ୍ଛ କରି କଳା ଓ ସାହିତ୍ୟକୁ ଓ୍ୱାଇ ପଡ଼ିବାର ସାହସ ଆସିଲା କେଉଁଠୁ ? ଜୀବନକୁ ଘଣ୍ଟା, ମିନିଟ୍‌ରେ ମାପି ପ୍ରତ୍ୟେକ ମୁହୂର୍ତ୍ତକୁ ସୃଜନରେ ନିୟୋଜିତ କରି ଅନ୍ତରର ଅଭିଳାଷ ପୂରଣ କରିବାରେ ଯେ ସକ୍ଷମ – ଆଉ ସେଇ ଜୀବନରୁ ଯେ ଆତ୍ମତୃପ୍ତି ଲାଭ କରି ସହସ୍ର ଗୁଣଗ୍ରାହୀ ଅନୁଗାମୀ, ବନ୍ଧୁ, ଶୁଭାକାଂକ୍ଷୀଙ୍କ ସ୍ନେହ ଶ୍ରଦ୍ଧା ପାଇ ପାରିଛନ୍ତି – ସେ ତୁଳନାରେ ଯେ କୌଣସି ରାଜଗାଦିର ମୂଲ୍ୟ ନଗଣ୍ୟ ।

'ମୁଁ ଈର୍ଷା କରେ ଏଇ ମଣିଷଟାକୁ ।

'ଭକ୍ତି କରେ ଶ୍ରଦ୍ଧା କରେ, ଯେମିତି ଗୁରୁଙ୍କ ପ୍ରତି ଥିଲା ଆଗ ପୁରାଣର ଶିଷ୍ୟମାନଙ୍କର ।'

ଲେଖକ, ଚିନ୍ତକ ଓ ସମାଜସେବୀ ଆଚାର୍ଯ୍ୟ ଭାବାନନ୍ଦ ଜଗନ୍ନାଥ ପ୍ରସାଦଙ୍କୁ ଟିକିଏ ଭିନ୍ନ ଭାବରେ ଦେଖନ୍ତି :

'ଜେ.ପି.ଙ୍କ ସହିତ ମୋର ବ୍ୟକ୍ତିଗତ ପରିଚୟ ଖୁବ୍ ଦୀର୍ଘ ନୁହେଁ – ବୋଧହୁଏ ୨/୩ ଥର ସାକ୍ଷାତ ହୋଇଛି – ଆଉ ୨/୪ ଖଣ୍ଡ ଚିଠିର ବିନିମୟରେ ଯେତିକି ପରିଚୟ ସମ୍ଭବ, ତାହା କ'ଣ ଜଣେ କଳାକାରର ଗଭୀରତାକୁ ସ୍ପର୍ଶ କରିପାରେ ? କିନ୍ତୁ ଏହି ସଂଯତ କଳାକାରଙ୍କ ଉପରେ 'ସମୟ' ବା 'କାଳ'ର ଚାପକୁ ଅତିକ୍ରମ କରି ପରସ୍ପରକୁ ବୁଝିବା, ମୋ ଅଭିଜ୍ଞତାରୁ ଯେତେ ସହଜ ବୋଲି ମନେହୁଏ, ତାହା କିନ୍ତୁ ଜଟିଳ ପ୍ରଶ୍ନ ଭାବରେ ରହିଯାଇଛି ...!

'ମନେହୁଏ, ଆମ 'ସମୟ'ର ସାର୍ଥକ ବ୍ୟତିକ୍ରମ ଜେ.ପି.ଙ୍କର ଲେଖନୀ ଓ ତୁଳୀ ଏବେ ବି ନିରବ ହୋଇ ନାହିଁ । 'ଭାବ' ଓ 'ଭାବନା'ର ଆକର୍ଷଣ ସେ ସହଜରେ ଛାଡ଼ିପାରି ନାହାନ୍ତି । ବୋଧହୁଏ ଏହି 'ନ ଛାଡ଼ିପାରିବା' ଓ ସମସ୍ତ ପ୍ରତିକୂଳ ପରିସ୍ଥିତି ସତ୍ତ୍ୱେ ସାହିତ୍ୟର ବା କଳାର ସର୍ଜନାତ୍ମକ ବା ଆଲୋଚନାର ପରିସର ଭିତରେ ତାଙ୍କର ଶାଣିତ ଓ ରସାଣିତ ଦୃଷ୍ଟିଭଙ୍ଗୀକୁ ଉପସ୍ଥାପିତ କରିବା କ୍ଷେତ୍ରରେ ସେ ଅନେକଙ୍କ ଭିତରେ ବାରିହୋଇ ପଡ଼ନ୍ତି । ମୋ'ଭଳି ପାଠକମାନଙ୍କ ମଧ୍ୟରେ ତାଙ୍କର ଏହି କଳାତ୍ମକ ସ୍ପର୍ଶକୁ ବୁଝିପାରିବା ଖୁବ୍ ସହଜ ହୋଇ ନାହିଁ । ତାଙ୍କୁ ମୁଁ ସମ୍ମାନ ଦେଇଆସିଛି ତାଙ୍କର କଳାତ୍ମକ ବ୍ୟକ୍ତିତ୍ୱ ପାଇଁ । ମୋ ବିଚାରରେ ସେ ଜଣେ ଗଭୀର ଓ ଗମ୍ଭୀର ସ୍ରଷ୍ଟା – ବେଳେବେଳେ ଦାର୍ଶନିକ ପର୍ଯ୍ୟାୟକୁ ଚାଲିଯାଇଛନ୍ତି ।'

ଖ୍ରୀଏଷ୍ଟ୍ କଲେଜ୍‌ରେ ଛାତ୍ର ଥିବା ସମୟରେ ଜଗନ୍ନାଥ ପ୍ରସାଦ ସଂଶ୍ଳିଷ୍ଟ ଥିଲେ 'ଅଭ୍ୟୁଦୟ ପାଠଚକ୍ର' ସହିତ । ଏ ଅନୁଷ୍ଠାନ ମାଧ୍ୟମରେ ବହୁ ସାହିତ୍ୟ ଆଲୋଚନା



ଅଭ୍ୟୁଦୟ ପାଠଚକ୍ର ୧୯୫୧
ପଛଧାଡ଼ିରେ ଡାହାଣରୁ ଦ୍ୱିତୀୟ

ଆୟୋଜିତ ହୋଇଛି; କେତେକ ମୂଲ୍ୟବାନ୍ ଗ୍ରନ୍ଥର ପ୍ରକାଶନ ମଧ୍ୟ । ଏ ଅନୁଷ୍ଠାନର ପ୍ରତିଷ୍ଠାତା ପଠାଣି ପଟ୍ଟନାୟକଙ୍କ ଭାଷାରେ :

'ପ୍ରଥମ ବାର୍ଷିକ ଶ୍ରେଣୀର କେତେଜଣ ଆଗ୍ରହୀ ଛାତ୍ରଙ୍କର ସାହିତ୍ୟ ପ୍ରତି ବିଶେଷ ଅନୁରାଗ ଲକ୍ଷ୍ୟ କରି ସେମାନଙ୍କୁ ଏକାଠି କରି ସାହିତ୍ୟ ଅନୁଷ୍ଠାନଟିଏ ଗଠନ କଲି । ତା'ର ନାମ ଦିଆଗଲା 'ଅଭ୍ୟୁଦୟ ପାଠଚକ୍ର' । ଏହି ଅନୁଷ୍ଠାନର ଆଦ୍ୟ ସହଯୋଗୀ ଥିଲେ ଜଗନ୍ନାଥ ପ୍ରସାଦ ଦାସ, ସୁଧାଂଶୁ ରାଉତରାୟ, ବିବେକାନନ୍ଦ ଦାସ ଓ ଆଉ କେତେଜଣ । ପ୍ରତ୍ୟେକ ଛୁଟିଦିନରେ ସତୀଚଉରା ଶ୍ମଶାନର ନିର୍ଜନ କବି ସମାଧି ପାଖରେ ଆମେ ଏକାଠି ହେଉ । ବନ୍ଧୁ ଅଧ୍ୟାପକ ଶ୍ରୀନିବାସ ମିଶ୍ର, ଅଧ୍ୟାପକ ଶ୍ରୀଧର ଦାସ ଏବଂ ଅଧ୍ୟାପକ ବାନାମ୍ବର ଆଚାର୍ଯ୍ୟ ଆଲୋଚନାରେ ଅଂଶଗ୍ରହଣ କରି ଏହି ତରୁଣମାନଙ୍କୁ ଉତ୍ସାହିତ କରନ୍ତି । ଏହି ତରୁଣ ଛାତ୍ରମାନଙ୍କ ମଧ୍ୟରେ ଜଗନ୍ନାଥ ବାରି ହୋଇ ପଡୁଥିଲେ । ସେ ଥିଲେ ଅତ୍ୟନ୍ତ ମେଧାବୀ ଛାତ୍ର ଏବଂ କୃତିତ୍ୱର ସହିତ ମାଟ୍ରିକ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ତାଙ୍କର ପିତା ଅଧ୍ୟାପକ ଶ୍ରୀଧର ଦାସଙ୍କ ପ୍ରେରଣାରେ ସେ ଏହି ବୟସରୁ କାବ୍ୟ ସାଧନାରେ ବ୍ରତୀ ହୋଇଥିଲେ ଏବଂ ଅତ୍ୟନ୍ତ ଆଶ୍ଚର୍ଯ୍ୟର କଥା ଯେ ସେତେବେଳକୁ ଏକ କବିତା ସଂକଳନ ମଧ୍ୟ ପ୍ରକାଶ ପାଇ ସାରିଥିଲା । କବିତା ଲେଖା ଓ ନିଷ୍ଠାପର ଅଧ୍ୟୟନ ଏକ ସଙ୍ଗରେ ଚାଲିଥାଏ । ସେ ସମୟରେ ଟିଉଟୋରିଆଲ କ୍ଲାସ୍‌ରେ ଛାତ୍ରମାନଙ୍କୁ ଲେଖିବାକୁ ଦିଆଯାଏ ଏବଂ ପରବର୍ତ୍ତୀ କ୍ଲାସ୍‌ରେ ଅଧ୍ୟାପକ ପରୀକ୍ଷା କରି ଉପଯୁକ୍ତ ମାନ ନିର୍ଦ୍ଧାରଣ କରିଥାଆନ୍ତି । ପ୍ରତ୍ୟେକ ଟିଉଟୋରିଆଲ୍ ପରୀକ୍ଷାରେ ଜଗନ୍ନାଥ ସର୍ବଶ୍ରେଷ୍ଠ କୃତିତ୍ୱର ଅଧିକାରୀ ହେଉଥିବା ସ୍ମରଣ ହେଉଛି । 'ଅଭ୍ୟୁଦୟ ପାଠଚକ୍ର'ରେ ଏହି ଅଧ୍ୟାପକମାନଙ୍କ ସମକ୍ଷରେ ତାଙ୍କର ଭାଷଣ ଥାଏ ଆହୁରି ଆକର୍ଷଣୀୟ । ଆଲୋଚ୍ୟ ପ୍ରସଙ୍ଗଟିର ବିଚାର ବିଶ୍ଳେଷଣ କରିବାରେ ମୌଳିକ ଚିନ୍ତନ ବାରି ହୋଇ ପଡୁଥାଏ । ଅଧିକାଂଶ ଛାତ୍ର ଆଲୋଚନାରେ ଅଂଶଗ୍ରହଣ କରିବାକୁ ସଙ୍କୋଚ ଅନୁଭବ କରିଥାଆନ୍ତି । କିନ୍ତୁ ଜଗନ୍ନାଥ ଏହି ତରୁଣ ବୟସରୁ ନିଃସଙ୍କୋଚରେ ନିଜର ଅଭିମତ ପ୍ରଦାନ କରି ଉପସ୍ଥିତ ଶ୍ରୋତାମାନଙ୍କର ଦୃଷ୍ଟି ଆକର୍ଷଣ କରିପାରୁଥିଲେ ।'

୧୯୫୨ର ଏଭଳି ସାହିତ୍ୟ ଆଲୋଚନା ସଂପର୍କରେ ମେ' ୧୯୯୩ରେ ଲିଖିତ ଏକ ପତ୍ରରେ ଜଗନ୍ନାଥ ପ୍ରସାଦଙ୍କୁ ଲେଖିଥିଲେ ମନୋଜ ଦାସ – 'ଯଦିଓ ଆମର ଖୁବ୍ କମ୍ ସାକ୍ଷାତ ହୁଏ, ତଥାପି ଆପଣଙ୍କ ପାଇଁ ମୋର ସ୍ୱତଃସ୍ଫୂର୍ତ୍ତ ଶ୍ରଦ୍ଧା ଓ ସମ୍ମାନ

ରହିଅଛି । ହୁଏତ ଏହାର କାରଣ ହୋଇପାରେ ପଞ୍ଚମ ଦଶକରେ ଆପଣ ଆୟୋଜନ କରୁଥିବା ସାହିତ୍ୟ ସଂଗଠନ ଓ ଆଲୋଚନା । ସେତେବେଳେ ଆପଣ ଥିଲେ ଜଣେ ତରୁଣ ଛାତ୍ର । ମୁଁ ରହୁଥିଲି ବାଲେଶ୍ବର ଓ ପୁରୀରେ । ତେବେ, ଥରେ ଆପଣଙ୍କ କାର୍ଯ୍ୟକ୍ରମ ଚାଲିଥିବା ସମୟରେ ମୁଁ କଟକରେ ଥିଲି । ସେତିକିବେଳେ ଆମର ପ୍ରଥମ ସାକ୍ଷାତ ହୋଇଥିଲା ଜୋବ୍ରା ନିକଟରେ । ସେତେବେଳେ ବିବେକ ଆପଣଙ୍କ ସହିତ ଥିଲା । ସେ ହିଁ ମୋତେ ଆପଣଙ୍କ ସହିତ ପରିଚିତ କରାଇ ଦେଇଥିଲା ।'

୧୯୮୪ରେ ଦିଲ୍ଲୀରେ କେତେଜଣ ବଂଧୁ ଗଠନ କଲେ 'ଦ ପୋଏଟ୍ରି ସୋସାଇଟି ଅଫ୍ ଇଣ୍ଡିଆ' । ଜଗନ୍ନାଥ ପ୍ରସାଦ ଏହି ଗୋଷ୍ଠୀରେ ସାମିଲ୍ ଥିଲେ; ସେ ଥିଲେ ଏହାର ଅନ୍ୟତମ ପ୍ରତିଷ୍ଠାତା । ଏହାର ସଂପାଦକ ହେଲେ ଏଚ୍.କେ. କାଉଲ୍; ପ୍ରଥମ ସଭାପତି ହେଲେ କେଶବ ମଲ୍ଲିକ୍ । ୧୯୮୬–୨୦୦୦ ମଧ୍ୟରେ ଜଗନ୍ନାଥ ପ୍ରସାଦ ଥିଲେ ଏହାର ସଭାପତି । ଏ ଯାବତ୍ ସେ ଏହାର ପରିଚାଳନା ସମିତିର ସଭ୍ୟ ରହି ସୋସାଇଟିକୁ ଆବଶ୍ୟକୀୟ ପରାମର୍ଶ ଦେଇଆସୁଛନ୍ତି ।

୧୯୮୮ରୁ ବ୍ରିଟିଶ୍ କାଉନ୍ସିଲ୍ ସହଯୋଗରେ 'ଦ ପୋଏଟ୍ରି ସୋସାଇଟି' ସର୍ବ ଭାରତୀୟ କବିତା ପ୍ରତିଯୋଗିତାଟିଏର ଆୟୋଜନ କରିଆସୁଛି । ତରୁଣ କବିମାନଙ୍କୁ କବିତା ରଚନାରେ ଦିଗ୍‌ଦର୍ଶନ ତଥା ଉତ୍ସାହ ପ୍ରଦାନ କରିବା ସୋସାଇଟିର ଏକ ମୁଖ୍ୟ କାର୍ଯ୍ୟକ୍ରମ । ଏହା ମଧ୍ୟ 'ଦ ଜର୍ଣ୍ଣାଲ୍ ଅଫ୍ ଦ ପୋଏଟ୍ରି ସୋସାଇଟି ଅଫ୍ ଇଣ୍ଡିଆ' ନାମରେ ଇଂରାଜୀରେ ଷାଣ୍ମାସିକ କବିତା ପତ୍ରିକାଟିଏ ପ୍ରକାଶ କରେ ।

କବିତା କର୍ମଶାଳା ୧୯୯୪




୧୯୯୨ରେ ଜଗନ୍ନାଥ ପ୍ରସାଦ ତରୁଣ କବିମାନଙ୍କ ପାଇଁ କବିତା କର୍ମଶାଳାର ପରିକଳ୍ପନା କରି କେନ୍ଦ୍ର ସରକାରଙ୍କ ମାନବ ସମ୍ବଳ ବିଭାଗ ପକ୍ଷରୁ ଆବଶ୍ୟକ ଆର୍ଥିକ ସହାୟତାର ବନ୍ଦୋବସ୍ତ କରିଥିଲେ । ଅଦ୍ୟାବଧି ତାଙ୍କ ଉଦ୍ୟମରେ କବିତା କର୍ମଶାଳା ଆୟୋଜିତ ହୋଇଆସୁଛି । ଓଡ଼ିଶାରେ ଏଭଳି କର୍ମଶାଳା ଅନୁଷ୍ଠିତ ହୋଇ ଆସୁଛି ଓ ଏଥିରେ ବିଭିନ୍ନ ଅଞ୍ଚଳର ବହୁ ତରୁଣ କବି ଅଂଶ ଗ୍ରହଣ କରୁଛନ୍ତି – ପ୍ରବୀଣ କବିମାନେ ସେମାନଙ୍କ ସହିତ କବିତା ସଂପର୍କରେ ମତ ବିନିମୟ କରୁଛନ୍ତି ।

ଏଭଳି କର୍ମଶାଳାରେ ଯେଉଁ ତରୁଣ କବିମାନେ ଅଂଶଗ୍ରହଣ କରିଆସିଛନ୍ତି, ସେମାନଙ୍କ ମଧ୍ୟରେ ପ୍ରୀତିଧାରା ସାମଲ ଅନ୍ୟତମ । ସେ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା 'ଯୁବ ପ୍ରତିଭା' ପୁରସ୍କାର ଲାଭ

କରିଛନ୍ତି । ତାଙ୍କର କବିତା ସଂକଳନ 'ଖେଳ' ଏକାଡେମୀ ପ୍ରକାଶ କରିଛି । କବିତା କର୍ମଶାଳା ସଂପର୍କରେ ତାଙ୍କର ଅନୁଭୂତି ଏହିପରି :

'ତେରବର୍ଷ ତଳର କଥା । ବୟସ ଅଳ୍ପ । କବିତାକୁ ନେଇ ସ୍ୱପ୍ନ ଅନେକ । ପ୍ରବଳ ପ୍ରବଣତା । କବିତାର ମୋହ ମନରେ, ପ୍ରାଣରେ । ଠିକ୍ ଏହି ସମୟରେ କବିତା ଲେଖିବା ସଂପର୍କରେ ତିନିଦିନିଆ କର୍ମଶାଳା । ୧୯୯୪ ମସିହା ୨୭ ଡିସେମ୍ବରରୁ ୨୯ ଡିସେମ୍ବର । 'ପୋଏଟ୍ରି ସୋସାଇଟି ଅଫ୍ ଇଣ୍ଡିଆ' ତରଫରୁ ଭୁବନେଶ୍ୱରସ୍ଥ ଆଞ୍ଚଳିକ ଶିକ୍ଷା ମହାବିଦ୍ୟାଳୟ ଠାରେ ଏହି କର୍ମଶାଳାର ଆୟୋଜନ କରାଯାଇଥାଏ । ସମଗ୍ର ଓଡ଼ିଶାରୁ ଅନେକ ଝିଅ ଆସିଥାନ୍ତି ଏହି କର୍ମଶାଳାରେ ଯୋଗ ଦେବାପାଇଁ । ତନ୍ମଧ୍ୟରୁ ସଂପ୍ରତି ଓଡ଼ିଆ ସାହିତ୍ୟରେ ସ୍ୱସ୍ଥାନ ଓ ସ୍ୱାତନ୍ତ୍ର୍ୟ ପ୍ରତିଷ୍ଠା କରିପାରିଥିବା ଯୁବକବି ଈପ୍‌ସିତା ଷଡ଼ଙ୍ଗୀ ଥିଲେ ମୋ ପରି ଅନ୍ୟତମ ଅଂଶଗ୍ରହଣକାରୀ । ଏହି ତିନିଦିନିଆ କର୍ମଶାଳାରେ ଆମ ଭିତରେ ମୁହଁ ଢାଙ୍କି ପଡ଼ିଥିବା କବିତାର ଅକର୍ମଣିଳା ସୁନ୍ଦର ଅବୟବ ନେଇ ପଦାକୁ ବାହାରିଲା । କବିତାର ଉର୍ଦ୍ଧ୍ୱ ଉଡ଼ାଣ ପାଇଁ ମିଳିଗଲା ଆକାଶ । କର୍ମଶାଳାରେ ଅଂଶଗ୍ରହଣକାରୀଙ୍କୁ ମାର୍ଗଦର୍ଶନ ଦେବାପାଇଁ ପହଞ୍ଚିଥିଲେ ଓଡ଼ିଶାର ପ୍ରାୟ ସମସ୍ତ ପ୍ରତିଷ୍ଠିତ କବି ତଥା ସାହିତ୍ୟିକ । ଗୋଟିଏ କାର୍ଯ୍ୟକ୍ରମରେ ଏତେ ସଂଖ୍ୟାରେ କବିଙ୍କ ଉପସ୍ଥିତି, ଏତେ ବଡ଼ ଆୟୋଜନ, ଏସବୁ ପଛରେ ଯାହାଙ୍କର ନିର୍ଦ୍ଦେଶନା ଓ ଇଚ୍ଛାଶକ୍ତି ନିହିତ ଥିଲା ସେ ହେଲେ ଶ୍ରୀ ଜଗନ୍ନାଥ ପ୍ରସାଦ ଦାସ । ତାଙ୍କ ଅଭିଭାବକତ୍ୱରେ ପ୍ରତ୍ୟେକ ଅଂଶଗ୍ରହଣକାରୀ ବହୁତ କିଛି ଶିଖିବାର ସୁଯୋଗ ପାଇଥିଲେ ଏବଂ ପ୍ରତିଷ୍ଠିତ କବିମାନଙ୍କ ସାନିଧ୍ୟ ଓ ଦିଗ୍‌ଦର୍ଶନ ପାଇପାରିଥିଲେ ।

କବିତା କର୍ମଶାଳାରେ ପ୍ରତିଭାରା ସାମଲ ୨୦୦୭



'ମୋ' କବିତା ରେ ଶବ୍ଦଟିଏ ଥିଲା 'କୀଟଦ୍ରଷ୍ଟ' । ଅଟକିଗଲା ସେଇଠି ଆଲୋଚନା । ଠିକ୍ ଶବ୍ଦଟି କ'ଣ ହେବ ସେଥିନେଇ ଆରମ୍ଭ ହେଲା ତର୍କ ; ମଞ୍ଚାସୀନ ବରିଷ୍ଠ କବିଙ୍କ ମଧ୍ୟରେ । ଶେଷରେ ଶବ୍ଦକୋଷ ମଗେଇଥିଲେ ଜେ.ପି. । ତାଙ୍କର ପିତୃସୁଲଭ ସ୍ନେହ, ଶିକ୍ଷକଙ୍କ ପରି ତାଗିଦ୍ ଓ ପଥପ୍ରଦର୍ଶନ ସମସ୍ତଙ୍କୁ ଅଭିଭୂତ କରିଦେଇଥିଲା । ସମସ୍ତେ ଖାଇଛନ୍ତି ନା ନାହିଁ, ସୁବିଧାରେ ଅଛନ୍ତି ନା ନାହିଁ, ଏକଥା ବୁଲି ବୁଲି ବୁଝୁଥିଲେ । ଏପରିକି ସଂଧ୍ୟା ସମୟରେ ମଧ୍ୟ ଆସି ସେ ଆମର ସୁବିଧା ଅସୁବିଧା ବୁଝିଯାଉଥିଲେ ।

'ତାଙ୍କ ବ୍ୟକ୍ତିତ୍ୱର ସବୁଠୁ ଆକର୍ଷଣୀୟ ବିଭାବ ହେଉଚି ତାଙ୍କ ଆଖି । ଏତେ ଶାଣିତ ଓ ତୀକ୍ଷ୍ଣ, ସତେ ଯେମିତି ହୃଦୟକୁ ଭେଦିଯିବ ସେ ଚାହାଣି । ଅଦ୍ଭୁତ ଚମକ ଥାଏ ସେ ଆଖିରେ । କିଛି ସମୟ ଚାହିଁଲେ ଜଣେ ମୋହଗ୍ରସ୍ତ ହୋଇଯିବା ବି ଅସମ୍ଭବ ନୁହେଁ ।

'ଦୀର୍ଘ ତେରବର୍ଷ ପରେ ସେହି ସ୍ଥାନ, ସେହି କାର୍ଯ୍ୟକ୍ରମ । ସୃଜନାତ୍ମକ ଓଡ଼ିଆ କବିତା ରଚନା କର୍ମଶାଳା, ଜାନୁୟାରୀ ୯ରୁ ୧୧ ତାରିଖ, ୨୦୦୭ ମସିହା । ଏଥର ବିଦ୍ୟାଳୟରେ ପଢୁଥିବା ପୁଅଝିଅମାନେ ଭାଗ ନେଉଥାଆନ୍ତି । ଏଥର ମୁଁ ଆଉ ଇପ୍‌ସିତା ଥିଲୁ ଏହି କାର୍ଯ୍ୟକ୍ରମରେ ମାର୍ଗଦର୍ଶକ । ସେଦିନର ଅଂଶଗ୍ରହଣକାରୀ ଆଜି ମାର୍ଗଦର୍ଶକ ଭୂମିକାରେ । ଆନନ୍ଦଦାୟକ ଓ ରୋମାଞ୍ଚକର ଅନୁଭୂତି । ଏହି କର୍ମଶାଳାରେ କବିମାନଙ୍କର ଭିଡ଼ ନ ଥିଲା ବରଂ ଯୁବକବିମାନେ ମାର୍ଗଦର୍ଶକର ଦାୟିତ୍ୱ ନେଇଥିଲେ । ଇପ୍‌ସିତା ଓ ମୋ ବ୍ୟତୀତ ଯୁବକବି ପବିତ୍ର ମୋହନ ଦାଶ, ଦୁର୍ଗାପ୍ରସାଦ ପଣ୍ଡା ଓ କେଦାର ମିଶ୍ରଙ୍କୁ ଏହି ଦାୟିତ୍ୱ ଦେଇଥିଲେ ଜେ.ପି. । ବରିଷ୍ଠ କବିମାନଙ୍କ ମଧ୍ୟରେ ରମାକାନ୍ତ ରଥ, ପ୍ରତିଭା ଶତପଥୀ, ବଂଶୀଧର ଷଡ଼ଙ୍ଗୀ, ହୃଷୀକେଶ ମଲ୍ଲିକ, ସୌରୀନ୍ଦ୍ର ବାରିକ, ଶତ୍ରୁଘ୍ନ ପାଣ୍ଡବ ଇତ୍ୟାଦି କବିବୃନ୍ଦ ବି ମଝିରେ ମଝିରେ ଆସୁଥିଲେ ପିଲାମାନଙ୍କୁ ଦିଗ୍‌ଦର୍ଶନ ଦେବାକୁ ଓ ସେମାନଙ୍କ କବିତାଗୁଡ଼ିକୁ ସମୀକ୍ଷା କରିବାକୁ । ଜେ.ପି. କବିମାନଙ୍କୁ ବହୁତ କହି ସମୟ ନଷ୍ଟ କରିବାକୁ ନ ଦେଇ ପିଲାମାନଙ୍କୁ କହିବାକୁ ସୁଯୋଗ ଦେଉଥିଲେ । ତେବେ ଗୋଟିଏ କଥା ସ୍ପଷ୍ଟ ହେଇଯାଇଥିଲା ଯେ ଜେ. ପି.ଙ୍କର ଯୁବକବିଙ୍କ ଉପରେ ଭରସା ଓ ବିଶ୍ୱାସ ରହିଛି । ଏହା ଆମକୁ ଉତ୍ସାହିତ କରିଥିଲା ।'

---

## ଆଲାହାବାଦ : ଗବେଷଣା, ଅଧ୍ୟାପନାରୁ ପ୍ରଶାସନ ସେବା



ଆଲାହାବାଦ, ୧୯୫୬

୧୯୫୫ରେ ଜଗନ୍ନାଥ ପ୍ରସାଦ ରେଭେନ୍ସା କଲେଜ୍‌ରୁ ଅର୍ଥନୀତିରେ ଅନର୍ସ ସହିତ ଉତ୍ତୀର୍ଣ୍ଣ ହେଲେ । ଏହାପରେ କେଉଁଠାରେ କେଉଁ ବିଷୟରେ ଏମ୍.ଏ. ଅଧ୍ୟୟନ କରିବେ, ଆପାତତଃ ସେଥିରେ କିଛି ଅନିଶ୍ଚିତତା ଥିଲା; ରହିବା ସ୍ୱାଭାବିକ ।

ସେ ସମୟରେ ଅର୍ଥାତ୍, ଆଜିଠାରୁ ପ୍ରାୟ ପଚାଶ ବର୍ଷ ତଳେ ଓଡ଼ିଶାରେ ଏମ୍.ଏ. ଡିଗ୍ରୀଧାରୀଙ୍କ ସଂଖ୍ୟା ବିଶେଷ ନ ଥିଲା । ରେଭେନ୍ସା କଲେଜ୍ ଓ ଉତ୍କଳ ବିଶ୍ୱବିଦ୍ୟାଳୟକୁ ବାଦ୍ ଦେଲେ ଅନ୍ୟ କୌଣସି ଶିକ୍ଷାନୁଷ୍ଠାନରେ ଏମ୍.ଏ. ଅଧ୍ୟାପନା କରାଯାଉ ନ ଥିଲା । ରେଭେନ୍ସା ଓ ଉତ୍କଳରେ ମଧ୍ୟ ଅଳ୍ପ କେତୋଟି ବିଷୟରେ ଏମ୍.ଏ. ଅଧ୍ୟୟନର ସୁଯୋଗ ଥିଲା; ଟେଲିଭିଜନ୍, କମ୍ପ୍ୟୁଟର, ଇଣ୍ଟର୍‌ନେଟ୍‌ର ନାମ ସେତେବେଳେ କେହି ଶୁଣି ନ ଥିଲେ । ଆଇ.ଟି. (ଇନ୍‌ଫର୍‌ମେସନ୍ ଟେକ୍ନୋଲୋଜି), ଇଲେକ୍ଟ୍ରୋନିକ୍ ବା ପ୍ରିଣ୍ଟ ମିଡିଆ, ମ୍ୟାନେଜ୍‌ମେଣ୍ଟ ପ୍ରଭୃତିକୁ ବୃତ୍ତିଭାବରେ ଗ୍ରହଣ କରିବାର କଳ୍ପନା କରାଯାଇ ନ ଥିଲା । ମେଧାବୀ ଛାତ୍ରମାନେ ଅଧ୍ୟାପନା, ପ୍ରଶାସନ, ଡାକ୍ତରୀ, ଇଞ୍ଜିନିୟରିଂ – ଏହିପରି କେତେକ କାର୍ଯ୍ୟରେ ମୁକରିର ହେଉଥିଲେ । ହ୍ୟୁମାନିଟିଜ୍ ବା କଳାଶାସ୍ତ୍ରର ଉଚ୍ଚାଭିଳାଷୀ ମେଧାବୀ ଛାତ୍ରମାନେ ପାଟଣା, କଲିକତା, ଆଲାହାବାଦ ବା ବନାରସ ବିଶ୍ୱବିଦ୍ୟାଳୟରେ ଏମ୍.ଏ. କରିବାକୁ ପସନ୍ଦ କରୁଥିଲେ । ତରୁଣ ଛାତ୍ରମାନଙ୍କୁ ଉପଯୁକ୍ତ ଦିଗ୍‌ଦର୍ଶନ ପ୍ରଦାନ ପାଇଁ – ସେମାନଙ୍କ ଭବିଷ୍ୟତ ଯୋଜନା ସଂପର୍କରେ ପରାମର୍ଶ ଦେବା ପାଇଁ ଓଡ଼ିଶାରେ ବିଶେଷଜ୍ଞମାନଙ୍କ ଏକାନ୍ତ ଅଭାବ ଥିଲା ।

ଜଗନ୍ନାଥ ପ୍ରସାଦ ବି.ଏ. ପାସ୍ କରିବା ପର୍ଯ୍ୟନ୍ତ ପିତା ଶ୍ରୀଧର ଦାସ ପୁତ୍ରର ଭବିଷ୍ୟତ ସଂପର୍କରେ କିଛି ସ୍ଥିର କରିଥିଲେ ବୋଲି ମନେହୁଏ ନାହିଁ । ତାଙ୍କ ଭାଷାରେ :

'ବର୍ତ୍ତମାନ ସମସ୍ୟା ହେଲା ସେ କେଉଁଠାରେ ଓ କେଉଁ ବିଷୟରେ ଏମ୍. ଏ. ପଢ଼ିବ । ତା'ର ଏକାନ୍ତ ଆଗ୍ରହ ଥାଏ ଆଲାହାବାଦ ବିଶ୍ୱବିଦ୍ୟାଳୟରେ ରାଜନୀତି ବିଜ୍ଞାନରେ ଏମ୍.ଏ. ପଢ଼ିବ । ମୁଁ ଏଥିପାଇଁ କୁଣ୍ଠିତ ଥିଲି । କାରଣ ଆଲାହାବାଦରେ ପଢ଼ିବା ବ୍ୟୟସାଧ ଓ ବିଦେଶରେ ତା'ଭଳି ୧୮ବର୍ଷ ବୟସର ଦୁର୍ବଳ ସ୍ୱାସ୍ଥ୍ୟବିଶିଷ୍ଟ ବାଳକ କିପରି ଚଳିବ ? କିନ୍ତୁ ସେ ୪୦ଟଙ୍କାରେ ଗୋଟିଏ ସ୍ନାତକୋତ୍ତର ବୃତ୍ତି ପାଇଲା ଓ ଅନ୍ୟ କେତେଜଣ ଓଡ଼ିଆଙ୍କ ସହିତ ଆଲାହାବାଦ ଯାତ୍ରା କଲା ।'

(ସୁଅ ମୁହଁର ପଥର)

ଜଗନ୍ନାଥ ପ୍ରସାଦ ଆଲାହାବାଦରେ ରାଜନୀତି ବିଜ୍ଞାନ ବିଭାଗରେ ନାମ ଲେଖାଇଲେ । ଓଡ଼ିଶା ଛାଡ଼ିଲା ବେଳକୁ ଜଣେ ଉଜ୍ଜ୍ୱଳ ଛାତ୍ର ଓ ଆଗଧାଡ଼ିର ତରୁଣ କବି ଭାବରେ ସେ ସୁପରିଚିତ ହୋଇସାରିଥିଲେ । ବର୍ତ୍ତମାନ ସଂପୂର୍ଣ୍ଣ ନୂତନ ପରିବେଶରେ ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ପ୍ରାଣକେନ୍ଦ୍ର କଟକଠାରୁ ବିଚ୍ଛିନ୍ନ ହୋଇ ସେ କିପରି ଅନୁଭବ କରିଥିବେ ? ଆଲାହାବାଦରେ ତାଙ୍କର କେତେଜଣ ବଂଧୁ ଓ ସହପାଠୀ ତାଙ୍କ ସଂପର୍କରେ ଯାହା କହନ୍ତି, ସେଥିରୁ ଜଗନ୍ନାଥ ପ୍ରସାଦଙ୍କ ଆଲାହାବାଦ ଜୀବନ ସଂପର୍କରେ କିଛି ସୂଚନା ମିଳେ । ପୂର୍ଣ୍ଣଚନ୍ଦ୍ର ହୋତା ସ୍ମରଣ କରନ୍ତି :

'ଜଗନ୍ନାଥବାବୁ ୧୯୫୫ରେ ଆଲାହାବାଦର ରାଜନୀତି ବିଜ୍ଞାନ ବିଭାଗରେ ଯୋଗ ଦେଲେ । ୧୯୫୭ରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ଏହି ବିଷୟରେ ଏମ୍.ଏ. ଡିଗ୍ରୀ ଲାଭ କଲେ । ଏହାପରେ ମଧ୍ୟ ସେ ସାର୍ ଗଙ୍ଗାନାଥ ଝା ହଷ୍ଟେଲ୍‌ରେ ହିଁ ରହିଲେ । ତାଙ୍କର ଉଦ୍ଦେଶ୍ୟ ଥିଲା ଆଇ.ଏ.ଏସ୍. ପରୀକ୍ଷା ପାଇଁ ନିଜକୁ ପ୍ରସ୍ତୁତ କରିବା ।'

ଜଗନ୍ନାଥ ପ୍ରସାଦଙ୍କର ଆଉଜଣେ ସହପାଠୀ ଥିଲେ ବଳରାମ ଚନ୍ଦ୍ର ରସ୍ତୋଗୀ । ସେ ମହାଶୟ ଭାରତ ସରକାରଙ୍କ ରାଜସ୍ୱ ସେବାରେ କାର୍ଯ୍ୟ କରି ବୋର୍ଡ ଅଫ୍ କଷ୍ଟମ୍ସ୍ ଆଣ୍ଡ୍ ଏକ୍ସାଇଜ୍‌ର ଚେୟାରମ୍ୟାନ୍ ଭାବରେ ଅବସର ଗ୍ରହଣ କରିଛନ୍ତି । ସେ କହନ୍ତି :

ଗଙ୍ଗାନାଥ ଝା ହଷ୍ଟେଲ୍, ଆଲାହାବାଦ, ୧୯୫୫
ଡାହାଣରୁ ଦ୍ୱିତୀୟ ଶରତ ପୂଜାରୀ, ବାମରୁ ଚତୁର୍ଥ ଜେପି



'୧୯୫୫ରେ ଆଲାହାବାଦ ବିଶ୍ୱବିଦ୍ୟାଳୟ ରାଜନୀତି ବିଜ୍ଞାନ ବିଭାଗରେ ଯୋଗ ଦେଲେ ଜଗନ୍ନାଥ ପ୍ରସାଦ ଦାସ । ବାଳକସୁଲଭ ଚେହେରା, ଲାଜକୁଳା, ଆପାତତଃ ଗମ୍ଭୀର । ପାଠପଢ଼ାରେ ତାଙ୍କର ଥିଲା ଗଭୀର ନିଷ୍ଠା, କିନ୍ତୁ ନିଜର ସୀମିତ ବଂଧୁ ମହଲରେ ସେ ଥିଲେ ଖୁବ୍ ମେଳାପୀ । ଏତେବର୍ଷ ପରେ ମଧ୍ୟ ସେଦିନର ବଂଧୁମାନଙ୍କ ସହିତ ତାଙ୍କର ସଂପର୍କ ଅତୁଟ ରହିଛି ।

'ତାଙ୍କୁ ଅନ୍ତରଙ୍ଗ ଭାବରେ ଜାଣିଥିଲେ ମଧ୍ୟ ତାଙ୍କର ବନ୍ଧୁମାନେ ତାଙ୍କ ହୃଦୟର ଭାବ ଓ କବିତ୍ୱର ଉଦ୍‌ବେଳନ ସଂପର୍କରେ ହୁଏତ ସଚେତନ ନ ଥିଲେ । ସେମାନେ ହୁଏତ ଜାଣିଥିଲେ ଜଗନ୍ନାଥ ପ୍ରସାଦ ଥିଲେ ଯୁକ୍ତିବାଦୀ, ନାସ୍ତିକ । ଦରିଦ୍ର ଅବହେଳିତମାନଙ୍କ ପ୍ରତି ତାଙ୍କର ଥିଲା ଖୁବ୍ ଦରଦ । ଆଲାହାବାଦ ବିଶ୍ୱବିଦ୍ୟାଳୟରେ ତାଙ୍କ ସମୟ ବିଶେଷ ଘଟଣାବହୁଳ ନ ଥିଲା । କଫି ହାଉସ୍‌ରେ ଜଳପାନ, ଗପସପ ଭିତରେ ବେଶ୍ ସମୟ ସେ କଟାଉଥିଲେ ।'

'୧୯୫୭ରେ ସେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ଉତ୍ତୀର୍ଣ୍ଣ ହେଲେ ଏବଂ ରାଜନୀତି ବିଜ୍ଞାନରେ ହିଁ ଅଧ୍ୟାପକ ଭାବରେ ଯୋଗଦେଲେ । ଖୁବ୍ ବେଶୀ ଗପୁଡ଼ି ନ ଥିଲେ । ଶ୍ରେଣୀଗୃହରେ ତାଙ୍କର କେତେକ ବନ୍ଧୁଙ୍କ ଉପସ୍ଥିତି ତାଙ୍କୁ ଟିକିଏ ଅଡୁଆ ଲାଗୁଥିଲା । ତେବେ ତାଙ୍କର ଅଧ୍ୟାପନା ଜୀବନ ସଂକ୍ଷିପ୍ତ । ୧୯୫୮ରେ ଆଇ.ଏ.ଏସ୍. ରେ ଯୋଗଦାନ କରି ସେ ଶିକ୍ଷାଦାନ ଛାଡ଼ି ପ୍ରଶାସନରେ ଯୋଗଦେଲେ । ତାହାପରେ ପ୍ରଶାସନ ବା ଅମଲାତନ୍ତ୍ରରୁ ଅବ୍ୟାହତି ନେଇ କଳା ଓ ସାହିତ୍ୟ ଜଗତରେ ନିଜକୁ ହଜାଇଦେଲେ ।'



ଶରତ ପୂଜାରୀଙ୍କ ଅଙ୍କିତ ସ୍କେଚ୍, ୧୯୫୫

ତେବେ ଜଗନ୍ନାଥ ପ୍ରସାଦଙ୍କ ଆଲାହାବାଦ ଜୀବନ ସଂପର୍କରେ ସବୁଠାରୁ ଅନ୍ତରଙ୍ଗ ବିବରଣୀଟିଏ ଆମେ ପାଉ ଶରତ ପୂଜାରୀଙ୍କ ଠାରୁ । ଶରତ ପୂଜାରୀ ଓଡ଼ିଆ ଚଳଚ୍ଚିତ୍ର ଜଗତର କିମ୍ବଦନ୍ତୀ ପୁରୁଷ – ପ୍ରତି ଓଡ଼ିଆ ପରିବାରରେ ପରିଚିତ । ଓଡ଼ିଆ ଜାତି ବା ଓଡ଼ିଶା ସରକାର ଏଯାବତ୍ ତାଙ୍କୁ ଯଥାର୍ଥ ସମ୍ମାନ ପ୍ରଦର୍ଶନ କରି ନାହାନ୍ତି – କିନ୍ତୁ ଶରତ ପୂଜାରୀ ସବୁବେଳେ ପ୍ରାଣଚଞ୍ଚଳ, ହସହସ, ଥଟ୍ଟାପରିହାସପ୍ରିୟ । କାହାର ସମ୍ମାନ ବା ସ୍ୱୀକୃତି ପାଇଁ ସେ ବ୍ୟାକୁଳ ମନେ ହୁଅନ୍ତି ନାହିଁ । ଆଲାହାବାଦରେ ଜଗନ୍ନାଥ ପ୍ରସାଦଙ୍କର (ଓ ତାଙ୍କ ନିଜ ଜୀବନର) ଏହିପରି ଚିତ୍ର ସେ ଆମ ସମ୍ମୁଖରେ ତୋଳି ଧରନ୍ତି :

'ଓଡ଼ିଶାର ଛାତ୍ରଟିଏ ସେତେବେଳେ ସ୍ନାତକ ହେବା ପରେ ପାଟଣା, କଲିକତା, ବନାରସ, ଲକ୍ଷ୍ନୌ, ପ୍ରୟାଗ ବିଶ୍ୱବିଦ୍ୟାଳୟରେ ଏମ୍.ଏ., ଏମ୍.ଏସ୍‌ସି., ଏମ୍.କମ୍. ଡିଗ୍ରୀ ପାଇଁ ପଢ଼ିବାକୁ ଯାଉଥିଲା । ରେଭେନ୍‌ଶା କଲେଜର ସ୍ନାତକୋତ୍ତର

ବିଭାଗମାନଙ୍କରେ ଖୁବ୍ ଅଳ୍ପ ସିଟ୍ ଥିବାରୁ  ବାହାରକୁ ଯାଇ ପଢ଼ିବାର ଇଚ୍ଛା ଅଧିକାଂଶ ଛାତ୍ରଛାତ୍ରୀ ପୋଷଣ କରୁଥିଲେ ।  ସେ ଦୃଷ୍ଟିରୁ ପ୍ରତିବର୍ଷ ଦଳଦଳ ଛାତ୍ର ଓଡ଼ିଶା ବାହାରର ବିଶ୍ୱବିଦ୍ୟାଳୟକୁ ପଢ଼ିବାକୁ ଯାଉଥିଲେ ।  ୧୯୫୦ ମସିହାରୁ ୧୯୬୦ମସିହା ପର୍ଯ୍ୟନ୍ତ ଏହା ବଳବତ୍ତର ଥିଲା ।

'ଭାରତର ସର୍ବପୁରାତନ ତୃତୀୟ ବିଶ୍ୱବିଦ୍ୟାଳୟ ଭାବରେ ଆଲାହାବାଦ ବା ପ୍ରୟାଗ ବିଶ୍ୱବିଦ୍ୟାଳୟ ସାରା ସଭ୍ୟ ଦେଶମାନଙ୍କରେ ଜଣାଶୁଣା ଥିଲା ।  ଏଠାରେ ପଢୁଥିବା ଛାତ୍ରମାନେ କ୍ରମାନ୍ୱୟରେ ସମ୍ମାନନୀୟ ଭାବରେ ସର୍ବୋଚ୍ଚ ସ୍ଥାନ ରଖି ଉତ୍ତୀର୍ଣ୍ଣ ହେଉଥିବାରୁ ଓ ସର୍ବଭାରତୀୟ ପରୀକ୍ଷାରେ ଶ୍ରେଷ୍ଠତ୍ୱ ବଜାୟ ରଖୁଥିବାରୁ ଭାରତର ବୁଦ୍ଧିଜୀବୀ ଓ ଜ୍ଞାନୀମାନଙ୍କର ଆଦରର ପାତ୍ର ଥିଲେ ।  ବିଶେଷଭାବରେ ବିଶ୍ୱବିଦ୍ୟାଳୟର ସାଧାରଣ ଶିକ୍ଷା ପାଠ୍ୟକ୍ରମ ଓ ବିଷୟରେ କୃତିତ୍ୱ ଦେଖାଇବା ସହିତ ଚିତ୍ରକଳା, ସଙ୍ଗୀତ ଓ କେତେକ ଅଣପାରଂପରିକ ଡିପ୍ଲୋମା ଓ ଡ଼ିଗ୍ରୀ ପାଠ୍ୟକ୍ରମରେ ନିଜର ଦକ୍ଷତା ଦେଖାଇଥିଲେ ।  ସେଥିପାଇଁ ବିଶ୍ୱବିଦ୍ୟାଳୟର ସମସ୍ତ ଅଧ୍ୟାପକ ଓଡ଼ିଶାର ଛାତ୍ରଟିକୁ ସର୍ବାଧିକ ସ୍ନେହ, ଶ୍ରଦ୍ଧା ଅଜାଡ଼ି ଦେଉଥିଲେ ।  ଗଣିତ, ଆଇନ, ରସାୟନ, ଇଂରାଜୀ, ପ୍ରାଣୀ ବିଜ୍ଞାନ, ଉଦ୍ଭିଦ ବିଜ୍ଞାନ, କୃଷି ବିଜ୍ଞାନ, ଇତିହାସ, ଅର୍ଥଶାସ୍ତ୍ର, ରାଜନୀତି ବିଜ୍ଞାନ ବିଭାଗମାନଙ୍କରେ ଓଡ଼ିଶାର ଛାତ୍ରମାନେ ଉଚ୍ଚ ନମ୍ବର ରଖି ପାସ୍ କରିବା ସହିତ ସର୍ବଭାରତୀୟ ସ୍ତରରେ ବିଶ୍ୱବିଦ୍ୟାଳୟର ଖ୍ୟାତି ଓ ଯଶ ରଖୁଥିଲେ ।  ଓଡ଼ିଶାର ଛାତ୍ରମାନେ ବିଶ୍ୱବିଦ୍ୟାଳୟର ଚାଳିଶି ଏକର ପରିସରରେ ଅବସ୍ଥିତ ଆଠ ଦଶଟି ଛାତ୍ରାବାସରେ ରହିବାର ସୁଯୋଗ ପାଉଥିଲେ ।  ପ୍ରତିବର୍ଷ ଆମ ସମୟରେ ପ୍ରାୟ ପଚାଶ ଜଣ ଓଡ଼ିଆ ଛାତ୍ର ପ୍ରୟାଗ ବିଶ୍ୱବିଦ୍ୟାଳୟରେ ଯୋଗ ଦେଉଥିଲେ ଓ ଛାତ୍ରାବାସମାନଙ୍କରେ ଅବସ୍ଥାପିତ ହେଉଥିଲେ ।

Sketch within
15 minutes

Portrait of J. P. Das
at night in electric
table lamp light.
Student of
Allahabad Varsity
Painting Deptt.
1955

ଶରତ ପୂଜାରୀଙ୍କ ଟିପ୍ପଣୀ

'୧୯୫୪ ମସିହାର ଜୁଲାଇ ମାସରେ ମୁଁ ପ୍ରୟାଗରେ ପହଞ୍ଚିଲା ବେଳକୁ ଆମ ଓଡ଼ିଆ ଛାତ୍ର ସମାଜ ମଧ୍ୟରେ ଡକ୍ଟର ତ୍ରିବିକ୍ରମ ପତି (ଗଣିତ), ଶ୍ରୀ ନବ କୁମାର ମିଶ୍ର (ଆଇନ), ଶ୍ରୀ ଚନ୍ଦ୍ରଶେଖର ମିଶ୍ର (ଅର୍ଥନୀତି) ଓ ଶ୍ରୀ ରମାକାନ୍ତ ମିଶ୍ର

(ରାଜନୀତି ବିଜ୍ଞାନ) ଓଡ଼ିଆ ଛାତ୍ରମାନଙ୍କ ମଧ୍ୟରେ ସମ୍ମାନନୀୟ ପୁରାତନ ଥିଲେ । ଏମାନେ ଆମର ରହିବାର ସୁବିଧା ଅସୁବିଧା ବୁଝୁଥିଲେ । ଏ ପରଂପରା ୧୯୪୫ ମସିହାରୁ ଚାଲି ଆସୁଥିଲା ।

'ମୋ ସହିତ ଯେଉଁ ଓଡ଼ିଆମାନେ ଗଙ୍ଗାନାଥ ଝା ହଷ୍ଟେଲ୍‌ରେ ଯୋଗ ଦେଲେ, ସେମାନେ ହେଲେ ମୋର ସହପାଠୀ ଶ୍ରୀ ନଳିନୀ ରଞ୍ଜନ ପଟ୍ଟନାୟକ (ଇତିହାସ), ଶ୍ରୀ ପ୍ରସନ୍ନ କୁମାର ପଟ୍ଟନାୟକ (ଇତିହାସ), ଶ୍ରୀ ସୁବୀର କୁମାର ସିହ୍ନା (ଅର୍ଥନୀତି), ଶ୍ରୀ ଦୁର୍ଗାପ୍ରସାଦ ସିଂହ (ବାଣିଜ୍ୟ), ଶ୍ରୀ ନିରଞ୍ଜନ ପଣ୍ଡା (ମୃତ୍ତିକା ରସାୟନ), ଶ୍ରୀ ରାମଚନ୍ଦ୍ର ମିଶ୍ର (ଇଂରାଜୀ) ଓ ଆଉ କେତେଜଣ । ଦ୍ୱିତୀୟ ବର୍ଷ ବେଳକୁ ଶ୍ରୀ ସୀତାକାନ୍ତ ମହାପାତ୍ର, ଶ୍ରୀ ପୂର୍ଣ୍ଣଚନ୍ଦ୍ର ହୋତା ଓ ଶ୍ରୀ ଜଗନ୍ନାଥ ପ୍ରସାଦ ଦାସଙ୍କ ପରି ଉତ୍କଳ ବିଶ୍ୱବିଦ୍ୟାଳୟର ମେଧାବୀ, କୃତୀ ଛାତ୍ରମାନେ ଗଙ୍ଗାନାଥ ଝା ହଷ୍ଟେଲ୍‌ର ସମ୍ମାନ ବଢ଼େଇଲେ । ଏମାନେ ହଷ୍ଟେଲ୍‌ରେ ଯୋଗ ଦେବା ସଙ୍ଗେ ସଙ୍ଗେ ଏମାନଙ୍କର ଇଂରାଜୀ ଭାଷଣ, ପ୍ରବନ୍ଧ ଓ କବିତାର ପ୍ରଭାବ ସାରା ବିଶ୍ୱବିଦ୍ୟାଳୟ ଅଧ୍ୟାପକ ମହଲରେ ଏକ ଆନ୍ଦୋଳନ ସୃଷ୍ଟି କରିଥିଲା । ଏହାର ପ୍ରଭାବରେ ସାଧାରଣ ଓଡ଼ିଆ ଛାତ୍ରଟିଏ ଯଥେଷ୍ଟ ଗର୍ବ ଅନୁଭବ କରୁଥିଲା । ଏହି ସମୟରେ ବିଶ୍ୱବିଦ୍ୟାଳୟର ଅନ୍ୟ ହଷ୍ଟେଲ୍‌ମାନଙ୍କରେ ମଧ୍ୟ ଓଡ଼ିଆ ଛାତ୍ରମାନଙ୍କୁ ରହିବାର ସୁଯୋଗ ମିଳିଲା । ମୋର ମନେହୁଏ ୧୯୫୫/୫୬ ମସିହା ବେଳକୁ ସର୍ବମୋଟ ପ୍ରାୟ ୫୦ ଜଣ ଏସବୁ ହଷ୍ଟେଲ୍‌ର ଛାତ୍ର ଥିଲେ । ଏମାନେ ହଲାଣ୍ଡ୍ ହଲ୍, ପିସିବି, ଡ଼ାଇମଣ୍ଡ୍ ଜୁବିଲି, ହିନ୍ଦୁ ହଷ୍ଟେଲ୍‌ମାନଙ୍କରେ ରହୁଥିଲେ । ଏ ସମସ୍ତ ଛାତ୍ର ଗଙ୍ଗାନାଥ ଝା ହଷ୍ଟେଲ୍‌ରେ ହିଁ ଭୋଜିଭାତରେ ଯୋଗ ଦେଉଥିଲେ ।

'ମୋର ଛୋଟବେଳୁ ଏକକ ଅଭିନୟ ଓ ଚିତ୍ରକଳା ପ୍ରତି ଅନୁରକ୍ତି ମୋତେ ଇଣ୍ଟ୍ରଡ଼କ୍‌ସନ୍ ନାଇଟ୍ (ରାଗିଂ) ସମୟରୁ ଛାତ୍ରମାନଙ୍କ ମଧ୍ୟରେ ପରିଚିତ କରାଇ ଦେଇଥିଲା । ଦୁଇମାସ ମଧ୍ୟରେ ମୁଁ ଅର୍ଥନୀତି ଏମ୍.ଏ. ସହିତ ପେଣ୍ଟିଂ ଡ଼ିପ୍ଲୋମାରେ ଯୋଗ ଦେଲି । ପ୍ରତିଦିନ ସକାଳ ନଅଟାରୁ ଅର୍ଥନୀତି କ୍ଲାସ୍‌ରେ ପଢ଼ିବା ପରେ ଦିନ ଦୁଇଟାରେ ମୁଁ ପେଣ୍ଟିଂ ବିଭାଗରେ ଯୋଗ ଦେଉଥିଲି ଓ ଚିତ୍ରକଳା ଅଭ୍ୟାସ କରୁଥିଲି ।

ଆଲ୍ଲାହାବାଦ ୧୯୫୬



'ଏଇ ସମୟରେ (ମୋର ଦ୍ୱିତୀୟ ବର୍ଷରେ) ଜଗନ୍ନାଥ ପ୍ରସାଦ ମୋ କୋଠରୀକୁ ଆସି ଚିତ୍ର ଓ ଅଭିନୟ ବିଷୟରେ କଥାବାର୍ତ୍ତା କରୁଥିଲେ । ସେ ସେତେବେଳେ ଗଳ୍ପ, କବିତା, ନାଟକ ଲେଖୁଥିଲେ ମଧ୍ୟ ଅଭିନୟ ବା ନିର୍ଦ୍ଦେଶନା ପ୍ରତି ସେତେ ଆସକ୍ତ ନ ଥିଲେ । କିନ୍ତୁ ଚିତ୍ରକଳା ପ୍ରତି ତାଙ୍କର ଆଗ୍ରହ ଏହି ସମୟରେ ବଢ଼ିବାକୁ ଲାଗିଲା ଓ ସେ କଳା ବିଷୟରେ ପଢ଼ାପଢ଼ି ଆରମ୍ଭ କରିଦେଇଥିଲେ । ଅବଶ୍ୟ ଜଣେ ମେଧାବୀ ଛାତ୍ରଭାବରେ ଓ ଆଇ.ଏ.ଏସ୍.କୁ ଲକ୍ଷ୍ୟ ରଖି ସେ ବେଶୀ ସମୟ କଳା ପାଇଁ

ଦେଇ ପାରୁ ନ ଥିଲେ । ମୋ କଥାରେ ପ୍ରଭାବିତ ହୋଇ ସେ ବିଶ୍ୱବିଦ୍ୟାଳୟର ପେଣ୍ଟିଂ ବିଭାଗରେ ଯୋଗ ଦେଇ କିଛିଦିନ ପାଇଁ ପେଣ୍ଟିଂ ଶିକ୍ଷା କରିଥିଲେ ଓ ଘରେ ତୈଳଚିତ୍ର ଆଙ୍କିବା ଅଭ୍ୟାସ କଲେ । ତାଙ୍କର ଅଭିରୁଚି ଆବ୍‌ଷ୍ଟ୍ରାକ୍ଟ ପେଣ୍ଟିଂ ଆଡ଼କୁ ଯାଉଥିଲା । ମୁଁ ଏ ଭିତରେ ପ୍ରୟାଗରୁ ଏମ୍.ଏ. ଓ ଡ଼ିପ୍ଲୋମା ପାସ୍ କରି ଘରକୁ ଫେରି ଚାକିରି ଖୋଜିବାରେ ବ୍ୟସ୍ତ ରହିଲି । ମୋର ପାରିବାରିକ ଚାପ ମୋତେ ଯେ କୌଣସି ଚାକିରି କରି ପେଟ ପୋଷିବାକୁ ବାଧ୍ୟ କରିଥିଲା । ତେଣୁ ମୁଁ ବରଗଡ଼ କଲେଜର ଅଧ୍ୟାପକ ଚାକିରିକୁ ଆଦରି ନେଲି । ଜଗନ୍ନାଥ ପ୍ରସାଦ କିନ୍ତୁ ନିର୍ଦ୍ଧାରିତ ଗତିପଥରେ ଯାଇ ଆଇ.ଏ.ଏସ୍.ରେ ଉନ୍ନୀତ ହୋଇ ଓଡ଼ିଶା ପ୍ରଶାସନରେ ଭାଗ ନେଲେ । ତାଙ୍କର ଚାକିରି କାଳ ମଧ୍ୟରେ ଓଡ଼ିଶାର ପାରଂପରିକ କଳା ପ୍ରତି ସେ ଆସକ୍ତ ହେଲେ । ଶ୍ରୀ ଜଗନ୍ନାଥଙ୍କର ପରଂପରାରେ ସଂସ୍କୃତି ଓ କଳାର ଅପୂର୍ବ ସମନ୍ୱୟ ଉପରେ ସେ ଗବେଷଣା କରିବା ଆରମ୍ଭ କରିଦେଲେ । ରଘୁରାଜପୁର ଗ୍ରାମର ବୈଶିଷ୍ଟ୍ୟକୁ ଲୋକଲୋଚନକୁ ଆଣିବା ପାଇଁ ସେ ସଚେଷ୍ଟ ହେଲେ । ଫଳରେ ରଘୁରାଜପୁର ଗ୍ରାମଟି ପୃଥିବୀ ବିଖ୍ୟାତ ହୋଇଗଲା । ଜଗନ୍ନାଥ ପ୍ରସାଦ ଏ ଗ୍ରାମର ପଟଚିତ୍ର ଅଙ୍କନର ପଦ୍ଧତିକୁ ଗବେଷଣା କରି ଜଗତ ବିଖ୍ୟାତ କରିଦେଲେ । ଓଡ଼ିଶୀ, ଗୋଟିପୁଅ ନୃତ୍ୟର ମୂଳ ପୀଠ ଭାବରେ, ରଘୁରାଜପୁରର ପଟଚିତ୍ର ଅଙ୍କନ ସହିତ କାନ୍ଥ ଚିତ୍ରର (fresco) ପରଂପରା ପ୍ରତ୍ୟେକ ବିଦେଶୀଙ୍କ ପାଇଁ ଦର୍ଶନୀୟ ହୋଇଗଲା । ଚିତ୍ରକଳାରୁ ନୃତ୍ୟ ଓ ତା ସହିତ ସଙ୍ଗୀତ ଓ ନାଟକର ସମନ୍ୱୟ ତାଙ୍କୁ ନାଟକ ଓ ସାହିତ୍ୟର ଅନ୍ୟ ବିଭାଗ ପ୍ରତି ଆକର୍ଷିତ କଲା । କବିତା ଓ 'ଦେଶ କାଳ ପାତ୍ର' ପରି ସାମାଜିକ ଇତିହାସ ଓ ଆଧୁନିକ ନାଟକ ଲେଖିବାକୁ ସେ ସୁଯୋଗ ପାଇଲେ ଦିଲ୍ଲୀର ରହଣି ଭିତରେ । ବିଶ୍ୱର ନାଟ୍ୟ କଳାକାର, ଚିତ୍ରକାର, ସ୍ଥପତି, ସାହିତ୍ୟିକ ଓ କବିଙ୍କ ଗହଣରେ ସେ ଯେଉଁ ସୃଷ୍ଟି କରି ଚାଲିଲେ, ତାହା କେବେ ଚାକିରି କରି ସମ୍ଭବ ହୋଇ ନ ଥାନ୍ତା । ତେଣୁ, ଅସମୟରେ ଚାକିରିରୁ ବିଦାୟ ନେଇ ନିଜର ସମସ୍ତ ସମୟ ବିତାଇଲେ ସୃଜନଶୀଳତା ଭିତରେ । ପରିବାରର ସେମିତି କିଛି ବନ୍ଧନ ନ ଥିଲା, ତେଣୁ ସେ ଜଣେ ମୁକ୍ତ ବିହଙ୍ଗ ପରି କଳାର ସମସ୍ତ ସ୍ତରକୁ ଉଡ଼ିଯାଇ ସୃଷ୍ଟି କରିଛନ୍ତି ଏକ ଅପରୂପ ସାମ୍ରାଜ୍ୟ । ଶୁକ୍ଳ କେଶ ବ୍ୟତୀତ, 'ସମୟ' ତାଙ୍କୁ ଜୀର୍ଣ୍ଣ କରିପାରି ନାହିଁ; ସେ ଏବେ ବି ଯୁବକ ।'



ଭରତ ପୂଜାରୀଙ୍କ ଅଙ୍କିତ ସ୍କେଚ୍, ୧୯୫୬

ବିଂଶ ଶତାବ୍ଦୀର ଷଷ୍ଠ ଓ ସପ୍ତମ ଦଶକରେ କଳା ବିଭାଗର ଅଧିକାଂଶ ଛାତ୍ରଙ୍କ ସ୍ୱପ୍ନ ଥିଲା ଆଇ.ଏ.ଏସ୍.ରେ ଯୋଗଦେବା । ଆଇ.ଏ.ଏସ୍. ଚାକିରି ସହିତ ସୁଖସ୍ୱାଚ୍ଛନ୍ଦ୍ୟ, ଅର୍ଥ, କ୍ଷମତା ଓ ସମ୍ମାନ ଯୋଡ଼ି ହୋଇ ଯାଉଥିଲା । ଯେଉଁମାନେ ଆଇ.ଏ.ଏସ୍.ରେ ଯୋଗ ଦେଉଥିଲେ, ସେମାନେ ସମାଜର ଅନ୍ୟ ବର୍ଗର

ସମସ୍ତଙ୍କଠାରୁ ସ୍ୱତନ୍ତ୍ର ବିବେଚିତ ହେଉଥିଲେ; ଆଇ.ଏ.ଏସ୍. ଅଫିସରମାନେ ନିଜକୁ ମୋଟାମୋଟି ଅନ୍ୟମାନଙ୍କଠାରୁ ଭିନ୍ନ ବିଚାରୁଥିଲେ; ହାକିମ ଆଚରଣ ଦେଖାଉଥିଲେ । ସେମାନଙ୍କ ମଧ୍ୟରୁ ଅଧିକାଂଶ ସମାଜର ନିମ୍ନ ମଧ୍ୟବିତ୍ତ ପରିବାରରୁ ଆସିଥିଲେ ମଧ୍ୟ ଅଚିରେ ଆର୍ଥିକ ସ୍ୱଚ୍ଛଳତା ଲାଭକରି ଏକ ନୂତନ ଅଭିଜାତବର୍ଗ ବା ଗୋଷ୍ଠୀରେ ସାମିଲ୍ ହୋଇଯାଉଥିଲେ । ଏହାକୁ ସାଧାରଣ ସତ୍ୟ ଭାବରେ ଅବଶ୍ୟ ଗ୍ରହଣ କରାଯାଇ ନ ପାରେ; ଏଥିରେ ବ୍ୟତିକ୍ରମ ରହିଛି ।

୧୯୫୭ରେ ଆଲାହାବାଦ ବିଶ୍ୱବିଦ୍ୟାଳୟରୁ ରାଜନୀତି ବିଜ୍ଞାନରେ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରି ପ୍ରାୟ ଗୋଟିଏ ବର୍ଷ ପାଇଁ ସେ ସେହି ବିଶ୍ୱବିଦ୍ୟାଳୟରେ ଗବେଷଣା ଓ ଅଧ୍ୟୟନ କରିଥିଲେ । ତେବେ ଅଧ୍ୟାପନାକୁ ସେ ବୃତ୍ତିଭାବରେ ଗ୍ରହଣ କଲେ ନାହିଁ କାହିଁକି ?

ଜଗନ୍ନାଥ ପ୍ରସାଦଙ୍କ ଅଧ୍ୟାପକ ଜୀବନ ପ୍ରସଙ୍ଗରେ ତାଙ୍କର ସ୍ୱନାମଧନ୍ୟ ପ୍ରଫେସର ଏ.ବି. ଲାଲ୍ ତାଙ୍କ ସଂପର୍କରେ ଲେଖିଛନ୍ତି :

'ଏମ୍.ଏ. ପରେ ସେ ରାଜନୀତି ବିଭାଗରେ ଗବେଷକଭାବରେ ଯୋଗ ଦେଲେ — ସେ ମଧ୍ୟ ପାର୍ଟ୍-ଟାଇମ୍ ଅଧ୍ୟାପନା ପାଇଁ ମନୋନୀତ ହେଲେ । ଏମ୍.ଏ. କ୍ଲାସ୍‌ରେ ଭାରତୀୟ ସମ୍ବିଧାନ ଓ ଭାରତୀୟ ସଂସ୍କୃତି ପଢ଼ାଉଥିଲେ ... । ସେ ଥିଲେ ଉତ୍କଳ ତଥା ଆଲାହାବାଦ ବିଶ୍ୱବିଦ୍ୟାଳୟର ଉଜ୍ଜ୍ୱଳତମ ଛାତ୍ରମାନଙ୍କ ମଧ୍ୟରେ ଅନ୍ୟତମ । ମୋ ମତରେ ସେ ଜଣେ ଆଦର୍ଶ ବିଶ୍ୱବିଦ୍ୟାଳୟ ଅଧ୍ୟାପକ ହୋଇପାରିଥା'ନ୍ତେ । ତାଙ୍କର ଆଇ.ଏ.ଏସ୍.ରେ ଯୋଗଦାନ ଆମର ଶିକ୍ଷା ଜଗତର ବିଶେଷ କ୍ଷତି ।'

ସେ ସମୟରେ ବହୁ ମେଧାବୀ ତରୁଣ ଓଡ଼ିଆ ସ୍ୱଳ୍ପକାଳ ଅଧ୍ୟାପନା ପରେ ଆଇ.ଏ.ଏସ୍. (ନ ହେଲେ ଆଲାଏଡ୍, ଆଇ.ପି.ଏସ୍.)ରେ ଯୋଗଦେବା ଫଳରେ ସେମାନେ ବୃତ୍ତିଗତ/ଆର୍ଥିକ ଦୃଷ୍ଟିରୁ କେତେ ଲାଭବାନ୍ ହୋଇଛନ୍ତି, ତାହା ଭିନ୍ନ କଥା, କିନ୍ତୁ ଓଡ଼ିଶାର ତଥା ଭାରତର ଶିକ୍ଷା ଜଗତ ବହୁ ଉଜ୍ଜ୍ୱଳ ପ୍ରତିଭାଙ୍କ ସ୍ୱାକ୍ଷରରୁ ବଞ୍ଚିତ ହୋଇଛି ନିଶ୍ଚୟ । ଏ ସଂପର୍କରେ ମୁଁ ମୋର କେତେଜଣ ଆଇ.ଏ.ଏସ୍. ବଂଧୁଙ୍କ ସହିତ କେବେ କିପରି ଅନୌପଚାରିକ ଭାବରେ ଆଲୋଚନା କରିଛି; ସେମାନେ କାହିଁକି ଶିକ୍ଷା ବିଭାଗରେ ଅଧ୍ୟାପନା/ଗବେଷଣା ଜାରି ନ ରଖି ସରକାରୀ ଅମଲା ହେବାକୁ ପସନ୍ଦ କଲେ, ତାହା ଜାଣିବାକୁ ଚାହିଁଛି । ସେମାନେ ମୋଟାମୋଟି ମୋ ପ୍ରଶ୍ନର ସିଧାସଳଖ ଉତ୍ତର ଦେବାକୁ ଏଡ଼ାଇ ଯାଇଛନ୍ତି ।

୧୯୮୪ରେ ଲଳିତେନ୍ଦୁ ମାନସିଂହ ଘଟଣାକ୍ରମେ ଲଣ୍ଡନ୍‌ରେ ଚିତ୍ରଶିଳ୍ପୀ ପ୍ରଫୁଲ୍ଲ ମହାନ୍ତିଙ୍କ ଆପାର୍ଟ୍‌ମେଣ୍ଟ୍‌କୁ ଆସିଥିଲେ । ସେତେବେଳେ ମୁଁ ମଧ୍ୟ ସେହି ଆପାର୍ଟ୍‌ମେଣ୍ଟ୍‌ରେ ରହୁଥିଲି । ମାନସିଂହ ସାହେବଙ୍କୁ ହଠାତ୍ ପଚାରିଦେଲି, 'ସାର୍, ଆପଣ ଅଧ୍ୟାପନା ବୃତ୍ତି ଛାଡି ଆଇ.ଏଫ୍.ଏସ୍. (ଇଣ୍ଡିଆନ୍ ଫରେନ୍ ସର୍ଭିସ୍)ରେ ଯୋଗଦେଲେ କାହିଁକି ? ଅଧ୍ୟାପନାରେ ରହିଥିଲେ ହୁଏତ ଆପଣ ଆଜି ଦେଶର ଜଣେ ବିଶିଷ୍ଟ ରାଜନୀତି ବିଶାରଦ ହୋଇଥା'ନ୍ତେ ।'

ସେ ଲଘୁ ଭାବରେ କହିଲେ, 'ସେତେବେଳେ ତ ସମସ୍ତେ ମୋତେ ଆଇ.ଏ.ଏସ୍. ହୁଅ ବୋଲି ଲଗାଇଲେ । ତେଣୁ ଆଇ.ଏ.ଏସ୍.ରେ ପଶିଗଲି ।'

୧୯୬୬ ରେ ଲଳିତେନ୍ଦୁ ଆଇ.ଏ.ଏସ୍. ପରୀକ୍ଷାରେ ସମଗ୍ର ଭାରତରେ ପ୍ରଥମ ହୋଇ ରାତାରାତି ପ୍ରସିଦ୍ଧ ହୋଇଯାଇଥିଲେ । ଆଇ.ଏ.ଏସ୍.ରେ ଯୋଗଦାନ ପୂର୍ବରୁ ସେ ଥିଲେ ଉତ୍କଳ ବିଶ୍ୱବିଦ୍ୟାଳୟରେ ରାଜନୀତି ବିଜ୍ଞାନ ବିଭାଗର ଅଧ୍ୟାପକ । (ଉଲ୍ଲେଖ କରାଯାଇପାରେ – ଆଇ.ଏ.ଏସ୍. ପରୀକ୍ଷାରେ ସଫଳତା ଲାଭ କରିଥିବା ପ୍ରଥମ କେତେଜଣଙ୍କୁ ଆଇ.ଏଫ୍.ଏସ୍.ରେ ଯୋଗଦେବା ପାଇଁ ସୁଯୋଗ ପ୍ରଦାନ କରାଯାଏ ।)



ମେଟ୍‌କାଫ ହାଉସ୍, ଆଇ ଏ ଏସ୍ ଏକାଡେମି, ନୂଆଦିଲ୍ଲୀ, ୧୯୫୮

ଆଇ.ଏ.ଏସ୍.ରେ ଯୋଗଦେବା ପୂର୍ବରୁ ସୁବାସ ପାଣି ଉତ୍କଳ ବିଶ୍ୱବିଦ୍ୟାଳୟରେ ଇଂରାଜୀ ବିଭାଗରେ ଅଧ୍ୟାପନା କରୁଥିଲେ; କବି ରମାକାନ୍ତ ରଥ ଫକୀରମୋହନ କଲେଜ୍‌ରେ ଓ ସମର ବଲ୍ଲଭ ମହାପାତ୍ର ଦିଲ୍ଲୀର ରାମ୍‌ଜସ୍ କଲେଜରେ ଇଂରାଜୀ ଅଧ୍ୟାପକ ଥିଲେ । କବି ସୀତାକାନ୍ତ ମହାପାତ୍ର ରେଭେନ୍ସା କଲେଜ୍‌ରେ ଇତିହାସ ବିଭାଗର ଅଧ୍ୟାପକ ଥିଲେ । ଏଠାରେ ଲମ୍ବା ତାଲିକାଟିଏ ଦେବାର ଆବଶ୍ୟକତା ନାହିଁ । ଏମ୍.ଏ. ପରେ ଅଧ୍ୟାପନା – ତା'ପରେ ଆଇ.ଏ.ଏସ୍. – ଏହା ସେ ସମୟରେ ଏକ ଗତାନୁଗତିକ ଧାରାରେ ପରିଣତ ହୋଇଥିଲା । ଏହି ଧାରାରେ ଆମ ତରୁଣ ପିଢ଼ିର ମାନସିକତା ତଥା ସମାଜର ମୂଲ୍ୟବୋଧର କିଛିଟା ପ୍ରତିଫଳନ ଲକ୍ଷ୍ୟ କରାଯାଇପାରେ । ମୋର ମନେହୁଏ, ଅଧ୍ୟାପନା ଅପେକ୍ଷା ଆଇ.ଏ.ଏସ୍. ବା ପ୍ରଶାସନିକ ବୃତ୍ତିକୁ ପସନ୍ଦ କରିବାର ଦୁଇଟି କାରଣ ଥିଲା –

(୧) ବୃତ୍ତି ଭାବରେ ଅଧ୍ୟାପନା ଆକର୍ଷଣୀୟ ନ ଥିଲା;

(୨) ଆଇ.ଏ.ଏସ୍. ଚାକିରି ଥିଲା ସୁଖସ୍ୱାଚ୍ଛନ୍ଦ୍ୟ, କ୍ଷମତା ଓ ଆଭିଜାତ୍ୟର ପ୍ରତୀକ ।

କିନ୍ତୁ ଏଭଳି ଧାରାର ଅନ୍ୟ ଦିଗଟିଏ ମଧ୍ୟ ଅଛି । ଆଇ.ଏ.ଏସ୍ .ରେ ଯୋଗଦାନ ପରେ ମଧ୍ୟ କେହି କେହି ଅଧ୍ୟାପକ ଜୀବନକୁ ସଂପୂର୍ଣ୍ଣ ପଛରେ ପକାଇ ଦେଉ ନ ଥିଲେ। ପ୍ରଶାସନିକ କାର୍ଯ୍ୟବ୍ୟସ୍ତତା ମଧ୍ୟରେ ଗବେଷଣା, ସାହିତ୍ୟ ସାଧନା ଜାରି ରଖୁଥିଲେ । ସୀତାକାନ୍ତ ମହାପାତ୍ର ନୃତତ୍ତ୍ୱ ବିଦ୍ୟାରେ ଓ ସୁବାସ ପାଣି ଇଂରାଜୀ ସାହିତ୍ୟରେ ପିଏଚ୍.ଡି. ଡିଗ୍ରୀ ଲାଭ କରିଛନ୍ତି । ରମାକାନ୍ତଙ୍କ କାବ୍ୟ ପ୍ରତିଭା ତ ଭାରତରେ ସୁବିଦିତ ।

ତେବେ ଜଗନ୍ନାଥ ପ୍ରସାଦଙ୍କ ପ୍ରସଙ୍ଗଟି କେତେକାଂଶରେ ଭିନ୍ନ । ଆଇ.ଏ.ଏସ୍.ତ ହେଲେ ୧୯୫୮ରେ; କିନ୍ତୁ ସେଥିରୁ ଇସ୍ତଫା ଦେଇଦେଲେ ୧୯୮୪ରେ । ଦିଲ୍ଲୀରେ ସାହିତ୍ୟ ଏକାଡେମୀ ଦ୍ୱାରା ଆୟୋଜିତ ଏକ ସାକ୍ଷାତ୍କାରରେ କବି କେକି ଦାରୁୱାଲା ତାଙ୍କୁ ପଚାରିଥିଲେ, 'ଆଇ.ଏ.ଏସ୍. ଚାକିରିରୁ ଇସ୍ତଫା ଦେଇଥିବାରୁ ଆପଣ ଦୁଃଖ କରନ୍ତି କି ?' ଜଗନ୍ନାଥ ପ୍ରସାଦ ଉତ୍ତର ଦେଇଥିଲେ, 'ହଁ, ମୁଁ ଦୁଃଖ କରେ ଏ ଚାକିରିରୁ ଆଗରୁ ଇସ୍ତଫା ଦେଇ ନ ଥିଲି ବୋଲି ।'

ଜଗନ୍ନାଥ ପ୍ରସାଦ ଯେଉଁ ଉଦ୍ଦେଶ୍ୟରେ ଆଇ.ଏ.ଏସ୍. ଛାଡିଥିଲେ, ଆଇ.ଏ.ଏସ୍.ରେ ରହିଥିଲେ ତାହା କରିପାରିଥାନ୍ତେ କି ନାହିଁ, ତାହା ଭିନ୍ନ କଥା । ଆଇ.ଏ.ଏସ୍. ବା ପ୍ରଶାସନିକ ଚାକିରିରେ ରହି ଗୋପୀନାଥ ମହାନ୍ତି, ରମାକାନ୍ତ ରଥ, ସୀତାକାନ୍ତ ମହାପାତ୍ର, ହରପ୍ରସାଦ ଦାସ ପ୍ରମୁଖ ବିପୁଳ ସାହିତ୍ୟ କୃତି ସୃଷ୍ଟି କରିପାରିଛନ୍ତି । ଜଗନ୍ନାଥ ପ୍ରସାଦ ତାହା କରିପାରି ନ ଥାନ୍ତେ କାହିଁକି ? କିନ୍ତୁ ଆଇ.ଏ.ଏସ୍.ରେ ପ୍ରାପ୍ତ ହେଉଥିବା ତଥାକଥିତ ସୁଖସ୍ୱାଚ୍ଛନ୍ଦ୍ୟ, ଅର୍ଥ ଓ କ୍ଷମତା ପ୍ରତି ତାଙ୍କର ବିଶେଷ ମୋହ ନ ଥିଲା – ସେପରି ଥିଲେ ସେ ଆଇ.ଏ.ଏସ୍. ଚାକିରିରୁ ଇସ୍ତଫା ଦେଇ ନ ଥାନ୍ତେ – ଏହା ବିଶ୍ୱାସ କରିବା ସ୍ୱାଭାବିକ । ଯେତେ କମ୍‌ସଂଖ୍ୟକ ହେଲେ ମଧ୍ୟ ଓଡ଼ିଶାର ଆଉ କେହି କେହି ମଧ୍ୟ ଆଇ.ଏ.ଏସ୍. ବା ପ୍ରଶାସନିକ ଚାକିରିରୁ ଇସ୍ତଫା ଦେଇଛନ୍ତି – କିନ୍ତୁ ସେମାନଙ୍କ ଇସ୍ତଫାର କାରଣ ଅଧିକ ବେତନରେ ଅନ୍ୟ କୌଣସି ଚାକିରିରେ ନିଯୁକ୍ତି ଲାଭ କରିବା କିମ୍ବା ରାଜନୀତି ବା ବ୍ୟବସାୟ ଆରମ୍ଭ କରିବା । ଜଗନ୍ନାଥ ପ୍ରସାଦ ଆଇ.ଏ.ଏସ୍.ରୁ ଇସ୍ତଫା ଦେବା ପରେ ମୁକ୍ତ ଜୀବନଯାପନ କରି ଆସିଛନ୍ତି ।

ଜଗନ୍ନାଥ ପ୍ରସାଦ ଅଧ୍ୟାପକ ହେଲେ ନାହିଁ, କିନ୍ତୁ ଶିକ୍ଷାଜଗତ ସହିତ ତାଙ୍କର ସଂପର୍କ ତୁଟିଲା ନାହିଁ । ଚିତ୍ରକଳାରେ ତାଙ୍କର ଗବେଷଣା ସୁବିଦିତ । ସେ ସଂପର୍କରେ ଅବଶ୍ୟ ପରେ ଆଲୋଚନା କରାଯିବ । ନବମ ଦଶକରେ ସେ ଉତ୍କଳ ଓ ଉତ୍କଳ ସଂସ୍କୃତି ବିଶ୍ୱବିଦ୍ୟାଳୟର ସିଣ୍ଡିକେଟ୍ ସଭ୍ୟଭାବରେ ଶିକ୍ଷା କ୍ଷେତ୍ରରେ ଦିଗ୍‌ଦର୍ଶନ ପ୍ରଦାନ କରିଥିଲେ – ଏପରିକି ସଂସ୍କୃତି ବିଶ୍ୱବିଦ୍ୟାଳୟର ପାଠ୍ୟକ୍ରମ ପ୍ରସ୍ତୁତି କମିଟିର ବରିଷ୍ଠ ସଭ୍ୟଭାବରେ ଏହାର ଖସଡ଼ା ପ୍ରସ୍ତୁତ କରିଥିଲେ । ଐତିହାସିକ ନୁରୁଲ୍ ହାସନ୍ ଓଡ଼ିଶାର ରାଜ୍ୟପାଳ ତଥା ଓଡ଼ିଶାର ବିଶ୍ୱବିଦ୍ୟାଳୟମାନଙ୍କର କୁଳାଧିପତି ଥିବା ସମୟରେ ଉତ୍କଳ, ବ୍ରହ୍ମପୁର, ସମ୍ବଲପୁର – ଯେ କୌଣସି ଗୋଟିଏ ବିଶ୍ୱବିଦ୍ୟାଳୟର କୁଳପତି ଦାୟିତ୍ୱ ଗ୍ରହଣ କରିବା ପାଇଁ ତାଙ୍କୁ ଅନୁରୋଧ କରାଯାଇଥିଲା । ହରେକୃଷ୍ଣ ମହତାବ ତାଙ୍କୁ ଦୈନିକ 'ଇଷ୍ଟର୍ଣ୍ଣ ଟାଇମ୍‌ସ୍'ର ସଂପାଦନା ଦାୟିତ୍ୱ ଗ୍ରହଣ କରିବାକୁ ପ୍ରସ୍ତାବ ଦେଇଥିଲେ । ଦିଲ୍ଲୀ ଅବସ୍ଥାନ କାଳରେ କେତେକ ସ୍ୱେଚ୍ଛାସେବୀ ଅନୁଷ୍ଠାନ ସହିତ ତାଙ୍କର ସଂପର୍କ ଗଢ଼ିଉଠିଲା । ସେଥିମଧ୍ୟରୁ ବଲ୍‌ବୀର ମାଥୁରଙ୍କ 'ବ୍ରିଜ୍ ଫର୍ ଲାଇଫ୍' ଅନ୍ୟତମ । କିନ୍ତୁ ଜଗନ୍ନାଥ ପ୍ରସାଦ କୌଣସି ପଦପଦବୀର ଦାୟିତ୍ୱ ଗ୍ରହଣ ପାଇଁ ଅନିଚ୍ଛୁକ ଥିଲେ ।

କିନ୍ତୁ ଏ ପରିଚ୍ଛେଦରେ ମୁଁ ମୂଳ ପ୍ରସଙ୍ଗରୁ ଦୂରେଇ ଯାଉଥିବା ଭଳି ମନେହୁଏ । ଆଲାହାବାଦ ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ, ଅଧ୍ୟାପନା, ଗବେଷଣା ଏବଂ ଆଇ.ଏ.ଏସ୍.ରେ ଯୋଗଦାନ – ଏସବୁର ତ ଆଲୋଚନା ହେଲା । କିନ୍ତୁ କବି ଜଗନ୍ନାଥ ପ୍ରସାଦ ଗଲେ କୁଆଡେ ? ଆଲାହାବାଦ ରହଣି ସମୟରେ ସେ କେଉଁ କେଉଁ କବିତା ଲେଖିଥିଲେ – ବା ଗଳ୍ପ, ନାଟକ ? କେତେଗୁଡ଼ିଏ ଚିତ୍ର ଆଙ୍କିଥିଲେ ? ସେ ସମୟରେ ସେ ମୋଟାମୋଟି ସାହିତ୍ୟ ବା ଚିତ୍ରକଳାଠାରୁ ଦୂରେଇ ରଖିଥିଲେ ନିଜକୁ । ଅବଶ୍ୟ ସାହିତ୍ୟ ବହି ପଢୁଥିଲେ ଖୁବ୍, ଚିତ୍ରକଳାରେ ଆଗ୍ରହୀ ଥିଲେ ନିଶ୍ଚୟ । ତେବେ ତାଙ୍କ ସୃଜନୀ ଜୀବନରେ ଏହି ସମୟ ଏକ ବିରତି ପରି ମନେହୁଏ । ତାଙ୍କ ପ୍ରଫେସର ଏ. ବି. ଲାଲ୍ ତାଙ୍କର ସାଙ୍ଗଠନିକ ଦକ୍ଷତା ସଂପର୍କରେ ଉଲ୍ଲେଖ କରିଛନ୍ତି – 'ଇଣ୍ଟରନ୍ୟାସ୍‌ନାଲ୍ କ୍ଲବ୍‌ର ସଂପାଦକ ଭାବରେ ଜଗନ୍ନାଥ ପ୍ରସାଦ ସଫଳତାର ସହିତ କାର୍ଯ୍ୟ ତୁଲାଇଥିଲେ, ଆତ୍ମପ୍ରଚାର ପ୍ରତି ବିମୁଖ ଥିଲେ । ...'

ପଞ୍ଚମ ଦଶକର ପ୍ରଥମ ଭାଗର ଆଗ ଧାଡ଼ିର ଜଣେ ତରୁଣ କବିଙ୍କ ନିରବତା ଲକ୍ଷ୍ୟକରି କେହି କେହି ପାଠକ/ସମାଲୋଚକ ଭାବିଥିବେ – କୌଣସି କାରଣରୁ ଜଗନ୍ନାଥ ପ୍ରସାଦ ସାହିତ୍ୟ ଜଗତରୁ ବିଦାୟ ନେଇଛନ୍ତି । କିନ୍ତୁ ୧୯୭୧ରେ – 'ପ୍ରଥମ ପୁରୁଷ'ର ପ୍ରକାଶନରେ ସେମାନେ ପୁଣି ଜଗନ୍ନାଥ ପ୍ରସାଦଙ୍କୁ ଭେଟିଲେ – ବର୍ତ୍ତମାନର ଜଗନ୍ନାଥ ପ୍ରସାଦଙ୍କ କବିସତ୍ତା କିନ୍ତୁ ଥିଲା ସଂପୂର୍ଣ୍ଣ ଭିନ୍ନ, ଅଧିକ ଶାଣିତ ଓ ସ୍ୱଚ୍ଛ ।

---

# କଳାହାଣ୍ଡି

୧୯୫୮ରୁ ୧୯୮୪ – ଏହି ଛବିଶି ବର୍ଷ ଜଗନ୍ନାଥ ପ୍ରସାଦ କାର୍ଯ୍ୟ କରିଥିଲେ ଆଇ.ଏ.ଏସ୍. ବା ଭାରତୀୟ ପ୍ରଶାସନିକ ସେବାରେ । ଏହି ସମୟ ମଧ୍ୟରେ ସେ ଓଡ଼ିଶା ବା ଭାରତ ସରକାରଙ୍କ ଅଧୀନରେ କେଉଁ କେଉଁ ବିଭାଗରେ କି କି ପଦବୀରେ କାର୍ଯ୍ୟ କରିଥିଲେ, ସେ ସଂପର୍କରେ ଅନେକେ ହୁଏତ ଖବର ରଖି ନାହାନ୍ତି । କିନ୍ତୁ ତାଙ୍କୁ ଜାଣିଥିବା ବା ତାଙ୍କ କବିତା ସହିତ ପରିଚିତ ପ୍ରାୟ ସମସ୍ତେ ଜାଣନ୍ତି – କଳାହାଣ୍ଡି ସହିତ ଥିଲା ତାଙ୍କର ଗୋଟାଏ ଆବେଗିକ ସଂପର୍କ ।

ଜଗନ୍ନାଥ ପ୍ରସାଦ କଳାହାଣ୍ଡିର କଲେକ୍ଟର ଥିଲେ ତିନିବର୍ଷ – ୧୯୬୩ ରୁ ୧୯୬୬ । ତାହା ପୂର୍ବରୁ ୧୯୫୮ରେ ଦିଲ୍ଲୀ ମେଟ୍‌କାଫ୍ ହାଉସ୍‌ରେ ଆଇ.ଏ.ଏସ୍. ବୃତ୍ତି ପାଇଁ ଟ୍ରେନିଂ ପରେ ସେ ଥିଲେ ପାନପୋଷର ଏସ୍.ଡି.ଓ.(୧୯୫୯–୬୦) ଓ ଓଡ଼ିଶା ସରକାରଙ୍କ ଅର୍ଥ ସଚିବାଳୟରେ ଅର୍ଥ ଓ ଉଦ୍ୟୋଗ ବିଭାଗର ଡେପୁଟି ସେକ୍ରେଟାରୀ (୧୯୬୧–୬୩) ।

କଳାହାଣ୍ଡି ଛାଡ଼ିବାର ପ୍ରାୟ ପଚିଶି ବର୍ଷ ପରେ ସେ ଲେଖିଲେ ତାଙ୍କର କବିତା 'କଳାହାଣ୍ଡି' । ଏ କବିତାଟି ଇଂରାଜୀ ଓ ଅନ୍ୟାନ୍ୟ ଭାରତୀୟ ଭାଷାରେ ଅନୂଦିତ ହୋଇ ତାଙ୍କୁ ବିଶେଷ ପରିଚିତ କରିପାରିଥିଲା ଭାରତୀୟ କାବ୍ୟ ସାହିତ୍ୟରେ । କବିତାଟି କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାରପ୍ରାପ୍ତ 'ଆହ୍ନିକ'(୧୯୯୦)ରେ ସ୍ଥାନିତ । ସଂପୂର୍ଣ୍ଣ କବିତାଟି ଏହିପରି :

## କଳାହାଣ୍ଡି

ମାନଚିତ୍ରକୁ ଏଥର ଅଲଗା ରଖିଦିଅ
ସେଠାକୁ ଯିବା ପାଇଁ ଆଉ
ହେଲିକପ୍ଟରର ପ୍ରୟୋଜନ ନାହିଁ
ଯେଉଁଠାରେ ଅନାହାର ସେଠାରେ ହିଁ କଳାହାଣ୍ଡି

ଇନ୍ଦ୍ର ସେଠାରୁ ମୁହଁ ବୁଲାଇ ନେଲେ
ଗଛରେ ଆଉ କଞ୍ଚା ପତ୍ର ରହିଲା ନାହିଁ

ସାରା ଗାଁ ଏବେ ମଶାଣି
ଫଟା ଭୂଇଁ ଓ ଶୁଖିଲା ନଈ ବାଲି
ଯୋଜନା ସବୁ ବିଫଳ ହୋଇଗଲେ
ଦାରିଦ୍ର୍ୟର ସୀମାରେଖା ଘୁଞ୍ଚି ଘୁଞ୍ଚି ଗଲା

ଯେଉଁଠାରେ ଦେଖ କଳାହାଣ୍ଡି
ପଞ୍ଜରା ହାଡ଼ରେ କୋଟରଗତ ଆଖିରେ

ଦେହ ଲୁଚୁ ନ ଥିବା ଛିଣ୍ଡା କନାରେ
ବନ୍ଧା ପଡ଼ିଥିବା କଂସାବାସନରେ
କୁଡ଼ିଆ ଘରର ଉଡୁରା ଛାତରେ
ଦୁଇଟି ମାଟିହାଣ୍ଡିର ସର୍ବସ୍ୱରେ

ସବୁଠାରେ କଳାହାଣ୍ଡି
ଅନନ୍ତଚକ୍ରର କଙ୍କାଳ ମେଳାରେ
ପିଲା ନିଲାମ ହେଉଥିବା ହାଟ ବଜାରରେ
ବେଶ୍ୟାଳୟରେ ବିକ୍ରି ହୋଇଥିବା
କିଶୋରୀର ଦୀର୍ଘଶ୍ୱାସରେ
ଗାଁ ମାଟି ଛାଡ଼ି ଚାଲିଯାଉଥିବା
ଲୋକମାନଙ୍କର ନୀରବ ଅସହାୟତାରେ

ଆହୁରି ପାଖରେ କଳାହାଣ୍ଡିକୁ ଦେଖ
ମିଛ ବିବୃତିର ଶୂନ୍ୟଗର୍ଭ ଘୋଷଣାରେ
ଅବିଶ୍ୱସ୍ତ ବକ୍ତୃତାର କୁମ୍ଭୀର କାନ୍ଦଣାରେ
କମ୍ପ୍ୟୁଟର କାଗଜର ଅତିରଞ୍ଜିତ ପରିସଂଖ୍ୟାନରେ
ସନ୍ନିଜନୀର ପ୍ରବଞ୍ଚନାରେ ଶସ୍ତା ସହାନୁଭୂତିରେ
ଯୋଜନାର ଅର୍ଥହୀନ ଅନ୍ଧ ପ୍ରତିଶ୍ରୁତିରେ

କଳାହାଣ୍ଡି ଆମର ଅତି ନିକଟରେ
ଆତ୍ମାର ସାମୟିକ ତାଡ଼ନାରେ
ବିବେକର ଅକସ୍ମାତ ଦଂଶନରେ
ଅନ୍ତଃକରଣର କ୍ୱଚିତ ଅନୁଶୋଚନାରେ
ସୁଖନିଦ୍ରାର ଦୁଃସ୍ୱପ୍ନରେ
ରୋଗରେ ଶୋକରେ ଅସହାୟତାରେ
ରକ୍ତପାତର ଆସନ୍ନ ସମ୍ଭାବନାରେ

ଆମେ କିପରି ଚାଲି ଯାଇପାରିବା
ଏକବିଂଶ ଶତାବ୍ଦୀର ସମୃଦ୍ଧ ନିରାପତ୍ତାକୁ
କଳାହାଣ୍ଡିକୁ ପଛରେ ଛାଡ଼ି ଦେଇ

(ଆହ୍ନିକ, ୧୯୯୦)

ଜଗନ୍ନାଥ ପ୍ରସାଦ କଲେକ୍ଟର ଥିବା ସମୟରେ କଳାହାଣ୍ଡି ଖୁବ୍ ପରିଚିତ ନ ଥିଲା ଭାରତରେ । ୧୯୯୦ବେଳକୁ ଏହା ହୋଇସାରିଥିଲା ଭାରତର ତଥା ପୃଥିବୀର ଅନ୍ୟତମ ପରିଚିତ ନାମ – କ୍ଷୁଧା, ଦାରିଦ୍ର୍ୟ, ଅବହେଳା ଅଥଚ ରତ୍ନଗର୍ଭା ଭୂମିର ପ୍ରତୀକ । ଏହି କଳାହାଣ୍ଡି ସଂପର୍କରେ ଏହା ମଧ୍ୟରେ କେବଳ ଓଡ଼ିଆରେ ନୁହେଁ, ଇଂରାଜୀରେ ମଧ୍ୟ ବହୁ ଲେଖା ପ୍ରକାଶିତ ହୋଇସାରିଛି । ଏ ସଂପର୍କରେ ମୋର ଜଣେ ବଂଧୁ ଇଂଲଣ୍ଡର ହାଲ୍ ବିଶ୍ୱବିଦ୍ୟାଳୟର ଅଧ୍ୟାପକ ଜନ୍ କେରୀଙ୍କ ବହି କଳାହାଣ୍ଡି : ଦ ପଲିଟିକ୍ସ୍ ଅଫ୍ ହଙ୍ଗର୍ (ମ୍ୟାକ୍‌ମିଲାନ୍, ୨୦୦୦)ର ଉଲ୍ଲେଖ କରାଯାଇପାରେ । ଜନ୍ ହାଲ୍ ବିଶ୍ୱବିଦ୍ୟାଳୟର ରାଜନୀତି ବିଜ୍ଞାନର ଅଧ୍ୟାପକ ଓଡ଼ିଶାର ସୁବ୍ରତ ମିତ୍ରଙ୍କ ତତ୍ତ୍ୱାବଧାନରେ ପିଏଚ୍.ଡି. କରିଥିଲେ । ବହୁଥର ଜନ୍ ଓଡ଼ିଶା ଆସିଛନ୍ତି ଓ ଓଡ଼ିଆ ଜାଣନ୍ତି ।

୧୯୬୬ରେ ଜଗନ୍ନାଥ ପ୍ରସାଦ କଲେକ୍ଟର ଥିବା ସମୟରେ କଳାହାଣ୍ଡିରେ ପଡ଼ିଥିଲା ଭୟଙ୍କର ମରୁଡ଼ି । ଏପରି ପରିସ୍ଥିତିରେ କଲେକ୍ଟରଙ୍କ ଦାୟିତ୍ୱ ଖୁବ୍ ବେଶୀ । ଅଧିକାଂଶ ସମୟରେ କିନ୍ତୁ ଆମର ଅମଲାତନ୍ତ୍ର ଫାଇଲ୍‌ର ଢାଲ ଭିତରେ ମୁଖ ଲୁଚାଇ

ଦାରୁଣ ଦୁର୍ବିପାକକୁ ଆଡ଼େଇ ଦିଏ । ବିଭିନ୍ନ ବାଦବିବାଦ ମଧ୍ୟରେ ଦୁର୍ବିପାକପ୍ରପୀଡ଼ିତ ଜନତା ପାଖରେ ଯେଉଁ ସରକାରୀ/ବେସରକାରୀ ସାହାଯ୍ୟ ପହଞ୍ଚେ, ତାହା ନଗଣ୍ୟ । ଆମେ କିନ୍ତୁ ୧୯୬୬ରେ ଯେଉଁ ଜଗନ୍ନାଥ ପ୍ରସାଦଙ୍କୁ ଭେଟୁ, ସେ ସମ୍ବେଦନହୀନ ଅମଲାତନ୍ତ୍ରର ପ୍ରତିନିଧି ନୁହନ୍ତି, ଜଣେ ମାନବବାଦୀ ଦରଦୀ ମଣିଷ (ଏହିଠାରେ ତାଙ୍କ ଛାତ୍ର ଜୀବନରେ ସେ ବାମପନ୍ଥୀ ଚିନ୍ତାଧାରାରେ ଉଦ୍‌ବୁଦ୍ଧ ଥିବା ସ୍ମରଣକୁ ଆସେ) ।

ଜଗନ୍ନାଥ ପ୍ରସାଦଙ୍କ ଅନ୍ୟତମ ଶିକ୍ଷକ, ଓଡ଼ିଶାର ସର୍ବତ୍ର ପରିଚିତ ଗାନ୍ଧୀବାଦୀ ଇଂରାଜୀ ପ୍ରଫେସର ସର୍ବେଶ୍ୱର ଦାଶ ୧୯୬୬ରେ ଭେଟିଥିଲେ ଜଗନ୍ନାଥ ପ୍ରସାଦଙ୍କୁ କଳାହାଣ୍ଡିରେ । ଏକ ସାକ୍ଷାତ୍‌କାରରେ ସେ ଯାହା କହିଛନ୍ତି ଶୁଣନ୍ତୁ :

'୧୯୬୬ରେ ମୁଁ ବୁଲିଛି କଳାହାଣ୍ଡିରେ – ସେଠି ମରୁଡ଼ି ପଡ଼ିଥିଲା, ଲୋକେ ମରିଥିଲେ । ରମାଦେବୀ ଯାଇଥିଲେ, ତା'ପରେ ମୁଁ ଗଲି । ଜଗନ୍ନାଥ ପ୍ରସାଦ ଦାସ ଥାଏ କଳାହାଣ୍ଡିର କଲେକ୍ଟର, ବଲାଙ୍ଗୀରରେ ଥାଏ ରମାକାନ୍ତ ମିଶ୍ର – ଦୁହେଁ ମୋର ଛାତ୍ର । ୬୬ରେ କଳାହାଣ୍ଡି ବୁଲି ଜଗନ୍ନାଥକୁ ଯାଇ କହିଲି – ପ୍ରଥମେ କାଗଜରେ ବାହାରି ସାରିଛି ଅନାହାରରେ ଲୋକେ ମରିଛନ୍ତି ବୋଲି । (ଅନାହାରରେ ଲୋକେ ମଲେ, ବିଟ୍ରିଶ୍ ସରକାରରେ ମଧ୍ୟ ବଡ଼ ସିରିୟସ୍ ଧରାଯାଉଥିଲା ।) ରମାଦେବୀ ଯେତେବେଳେ ୧୯୬୬ରେ ବୁଲିକି ଆସି କହିଦେଲେ – ସମସ୍ତେ ତାଡି ଗଲେ, କଲେକ୍ଟରଙ୍କ ସହ । ପରେ ସେମାନେ ଜାଣିଲେ ତାଙ୍କର ଅସୁବିଧା କ'ଣ । ସେଠି କଣ୍ଟାକ୍ଟ ନାହିଁ । ବ୍ୟକ୍ତିଗତ ମତାମତ ଉପରେ ନିର୍ଭର କରୁଛନ୍ତି, ଗ୍ରାମସେବକ ଉପରେ ନିର୍ଭର କରୁଛନ୍ତି । ମୁଖ୍ୟ ଡାକ୍ତରଙ୍କ ଉପରେ ନିର୍ଭର କରୁଛନ୍ତି । ସେମାନେ ଯାହା ରିପୋର୍ଟ ଦେଉଛନ୍ତି, ତାହାପରେ କଲେକ୍ଟର ଯାହା କରୁଛନ୍ତି । ଫାଇଲ୍ କାମ ବହୁତ । କଳାହାଣ୍ଡିରେ ବିରଜା ରାୟଙ୍କ ସହ ୧୫ଦିନ ବୁଲିଲା ପରେ ମୁଁ ଅବସ୍ଥା ଦେଖିଲି, ରାସ୍ତା ଦେଖିଲି । ଆଜି ଏ ରାସ୍ତା (ଭୁବନେଶ୍ୱରର) ଦେଖିଲାବେଳେ ମନେ ହେଉଛି – କେତେ କୋଟି କୋଟି ଟଙ୍କା ଏଠି ଖର୍ଚ୍ଚ କରୁଛ । କହୁଛ, ଲୋକେ ବଢୁଛନ୍ତି । ସେଥିପାଇଁ କରୁଛ । କିନ୍ତୁ ରାଜ୍ୟର ଅନ୍ୟ ଅଂଚଳ ? ୧୯୬୬ରେ ଯେତେବେଳେ ଗଲି, ଜଗନ୍ନାଥକୁ କହିଲି ।'

'ତେବେ ଜଗନ୍ନାଥ ପ୍ରସାଦ ଦାସ ଆପଣଙ୍କ କଥା ମାନିଲେ ?'

'ହଁ, ଜଗନ୍ନାଥ ସେଇଠୁ ଗଲା । ତା'ପରେ ୧୮ଦିନ ବୁଲିଲା । ମୁଁ ବଲାଙ୍ଗୀରର କଲେକ୍ଟର ରମାକାନ୍ତ ମିଶ୍ରକୁ ଭେଟିବାକୁ ଯିବାର ଥିଲା । ଜଗନ୍ନାଥ ମୋତେ ସେଇଠୁ ତା' ଘରକୁ ଖାଇବାକୁ ଡାକିଥିଲା । ତା'ଘରେ ଖାଇଲି, ତା' ସାଂଗେ କଥାବାର୍ତ୍ତା ହେଲି । ସେ କହିଲା, ସେଠାକାର ସବୁ ଅସୁବିଧା – ଫୋନ୍ ଭଲ ଚାଲୁନି । ବାରମ୍ବାର ଆସେ, ରିପୋର୍ଟ ପଠା । ଏତେଥର ସେମାନେ ରିପୋର୍ଟ ମାଗନ୍ତି । ଆମେ ଅଧସ୍ତନଙ୍କ ଉପରେ ନିର୍ଭର କରିଥାଉ । ଆମେ ସବୁବେଳେ ଭିତରକୁ ଯାଇପାରୁନୁ ।

ଫାଇଲ୍ କାମରେ ଏତେ ସମୟ ଚାଲିଯାଉଛି । ଏମିତି ସବୁ କହିଲା । ତା'ପରେ ନିଜେ ଗଲା ।' (ଲେଖାଲେଖି, ମେ ୨୦୦୭)

ମରୁଡିପ୍ରପୀଡ଼ିତ ସାଧାରଣ ମଣିଷମାନଙ୍କୁ ସାହାଯ୍ୟ କରିବାର ବ୍ୟାକୁଳତା ସହିତ ଅମଲାତାନ୍ତ୍ରିକ ପଦ୍ଧତିରେ କାର୍ଯ୍ୟ କରିବାର ଅସହାୟତା ସ୍ମରଣ କରନ୍ତି ପ୍ରଫେସର୍ ଦାଶ । (କଳାହାଣ୍ଡିର କଲେକ୍ଟର ଥିବା ସମୟରେ କ'ଣ ଜଗନ୍ନାଥ ପ୍ରସାଦଙ୍କ ମନକୁ ଏପରି ଭାବଟିଏ ଆସିଥିଲା – ଯେ ତଥାକଥିତ ଉଚ୍ଚ ପଦପଦବୀରେ ରହି ମଧ୍ୟ ଜଣେ ଯାହା ଚାହେଁ ତାହା କରିବା ସମ୍ଭବ ନୁହେଁ ? ତେଣୁ ଏଭଳି ପଦପଦବୀ ଛାଡ଼ି ଦେଲେ ଦୁଃଖ କରିବାର କାରଣ ନାହିଁ ।) । ଏ ବିଷୟରେ ଜଗନ୍ନାଥ ପ୍ରସାଦ ନିଜେ ସାହିତ୍ୟ ଏକାଡେମିର 'ମିଟ୍ ଦ ଅଥର୍' କାର୍ଯ୍ୟକ୍ରମରେ କହିଛନ୍ତି :

'ମୋର ସରକାରୀ ଚାକିରି ବିଷୟରେ ଭାବିଲେ ପ୍ରଥମେ ମନକୁ ଆସେ ଚାଳିଶି ବର୍ଷ ତଳେ କଳାହାଣ୍ଡିରେ ଜିଲ୍ଲାପାଳ ରହିଥିବା ସମୟର କଥା । ବର୍ତ୍ତମାନ ଅନେକେ ଆଫ୍ରିକାର ସୋମାଲିଆ ଭଳି କଳାହାଣ୍ଡି ନାମ ସହିତ ପରିଚିତ । କିନ୍ତୁ କଳାହାଣ୍ଡିରେ ମୁଁ ନିଯୁକ୍ତି ପାଇଲା ବେଳକୁ ଓଡ଼ିଆମାନେ ମଧ୍ୟ ତା'ର ସମସ୍ୟା ସହିତ ପରିଚିତ ନ ଥିଲେ । ୧୯୬୫-୬୬ରେ କଳାହାଣ୍ଡିରେ ଦୁର୍ଭିକ୍ଷ ପଡ଼ିବା ପରେ ଏହା ଜାତୀୟ ସ୍ତରରେ ପରିଚିତ ହେଲା । ପ୍ରଥମ ଥର ପାଇଁ ଜଣେ ପ୍ରଧାନମନ୍ତ୍ରୀ ଏହି ଦୁର୍ଗମ ଅଞ୍ଚଳକୁ ଆସିଲେ । ଯାତାୟାତର ସୁବିଧା ନ ଥିବାରୁ ଇନ୍ଦିରା ଗାନ୍ଧୀଙ୍କୁ ହେଲିକପ୍ଟର ଯୋଗେ ଆସିବାକୁ ପଡ଼ିଥିଲା ।

'କଳାହାଣ୍ଡି ଦୁର୍ଭିକ୍ଷର ପ୍ରାୟ ଶହେ ବର୍ଷ ତଳେ ୧୮୬୬ରେ ଓଡ଼ିଶାରେ ଭୟଙ୍କର ଦୁର୍ଭିକ୍ଷ ପଡ଼ିଥିଲା । ସେତେବେଳେ ଓଡ଼ିଶାର ଲୋକସଂଖ୍ୟାର ଏକତୃତୀୟାଂଶ ମୃତ୍ୟୁ ମୁଖରେ ପଡ଼ିଥିଲେ । ଲୋକେ ଭାବୁଥିଲେ, ୧୮୬୬ର ଶହେ ବର୍ଷ ପରେ ପୁଣିଥରେ ଦୁର୍ଭିକ୍ଷ ପଡ଼ିବ । ୧୮୬୬ର ଦୁର୍ଭିକ୍ଷ ଥିଲା ମଣିଷକୃତ, କାରଣ ପ୍ରଶାସନକଳ ବିଶ୍ୱାସ କରୁଥିଲା, ଓଡ଼ିଶାର ଆବଶ୍ୟକତା ପୂରଣ କରିବା ପାଇଁ ଯଥେଷ୍ଟ ଖାଦ୍ୟଶସ୍ୟ ମହଜୁଦ ଅଛି । ତେଣୁ ଓଡ଼ିଶାରୁ ଖାଦ୍ୟଶସ୍ୟ ଚାଲାଣ ଅବ୍ୟାହତ ରହିଥିଲା । ଓଡ଼ିଶାକୁ ଖାଦ୍ୟଶସ୍ୟ ଆମଦାନୀ କରାଯାଇ ନ ଥିଲା ।

'୧୯୬୫ ଅଗଷ୍ଟ ମଧ୍ୟଭାଗରେ କଳାହାଣ୍ଡିରେ ବର୍ଷା ଅଭାବରୁ ଦୁର୍ଭିକ୍ଷର ସୂଚନା ମିଳିଲା । ତେଣୁ ମୁଁ ସରକାରଙ୍କୁ ଲେଖିଲି :

'ଏ ବର୍ଷ ଲୋକଙ୍କ ଆବଶ୍ୟକତା ପୂରଣ କରିବା ପାଇଁ ଯଥେଷ୍ଟ ଖାଦ୍ୟଶସ୍ୟ ନ ମିଳିବାର ଆଶଙ୍କା ଅଛି । ତେଣୁ କଳାହାଣ୍ଡିରୁ ଖାଦ୍ୟଶସ୍ୟ ରପ୍ତାନୀ ସଂପୂର୍ଣ୍ଣ ବନ୍ଦ କରାଯାଉ ... ।' କଳାହାଣ୍ଡିରୁ ଖାଦ୍ୟଶସ୍ୟ ରପ୍ତାନୀ ନ କରିବାକୁ ମୁଁ ନିର୍ଦ୍ଦେଶ ଦେଲି । ରେଲ୍‌ୱେ ଷ୍ଟେସନ୍ ମାଷ୍ଟରଙ୍କୁ ମଧ୍ୟ ଲେଖିଲି, କଳାହାଣ୍ଡିରୁ ଖାଦ୍ୟଶସ୍ୟ ଚାଲାଣ ନିଷେଧ କରିବା ପାଇଁ ।



ବଙ୍ଗଳା ଲେଖକ ପ୍ରବୋଧ କୁମାର ସାନ୍ୟାଲଙ୍କ ସହ ଭବାନୀପାଟଣା, ୧୯୬୫

'ଉପରିସ୍ଥ ପ୍ରଶାସକମାନେ ପରିସ୍ଥିତିର ବାସ୍ତବତା ଯେ ବୁଝନ୍ତି ନାହିଁ, ତାହା ସେମାନଙ୍କ ଉତ୍ତରରୁ ଜଣାଯାଏ । ଉପରିସ୍ଥ ହାକିମ ଉତ୍ତର ଦେଲେ, 'ମୁଁ ନିଶ୍ଚିତ ଯେ ଆପଣଙ୍କ ଜିଲ୍ଲାରେ ଯଥେଷ୍ଟ ଖାଦ୍ୟଶସ୍ୟ ଅଛି । ଆପଣ ସେ ସଂପର୍କରେ ଅବହିତ ନାହାନ୍ତି । ଏ ବର୍ଷ ମଧ୍ୟ ଜିଲ୍ଲାର ଆବଶ୍ୟକତା ପୂରଣ ପାଇଁ ଯଥେଷ୍ଟ ଖାଦ୍ୟଶସ୍ୟ ଅମଳ ହେବ । ତେଣୁ ଖାଦ୍ୟଶସ୍ୟର ଆମଦାନୀ ବା ରପ୍ତାନୀରେ ଆପଣ ହସ୍ତକ୍ଷେପ କରିବା ଉଚିତ୍ ନୁହେଁ ।'

'ଏଠାରେ ମୁଁ କହି ରଖେ, ମୁଁ ବର୍ତ୍ତମାନ ଯେଉଁ ଉକ୍ତିଟି ଉଦ୍ଧାର କଲି, ତାହା ମୋ' ନିକଟକୁ ଲେଖାଯାଇ ନ ଥିଲା, ଲେଖା ଯାଇଥିଲା ବାଲେଶ୍ୱରର ଜିଲ୍ଲାପାଳଙ୍କ ନିକଟକୁ – ୧୮୬୬ରେ, ଶହେ ବର୍ଷ ତଳେ । ଏହା ଲେଖିଥିଲେ ବ୍ରିଟିଶ୍ କମିଶନର୍ ରେଭେନ୍ସା । ଊନବିଂଶ ଶତାବ୍ଦୀର ଓଡ଼ିଶା ସଂପର୍କରେ ଗବେଷଣା କରୁଥିବା ସମୟରେ ଏ ପତ୍ରଟି ମୋ'ଦୃଷ୍ଟିରେ ପଡ଼ିଥିଲା ।

'୧୯୬୬ରେ – ଶହେବର୍ଷ ପରେ – ମୁଁ ଯେଉଁ ଉତ୍ତର ପାଇଲି, ସେଥିରେ ମଧ୍ୟ ଅଧିକ ବିସ୍ତୃତଭାବରେ ତାହା ହିଁ ଲେଖା ହୋଇଥିଲା । ସେଥିରେ ଲେଖାଥିଲା, ସରକାର ସ୍ଥିର କରିଛନ୍ତି କଳାହାଣ୍ଡିରୁ ଖାଦ୍ୟଶସ୍ୟ ରପ୍ତାନି ଚାଲୁ ରହିବ । ଏହା ମଧ୍ୟ ସ୍ଥିର କରିଛନ୍ତି, ମୁକ୍ତ ବାଣିଜ୍ୟରେ କୌଣସି ବାଧା ଦିଆଯିବ ନାହିଁ । ଯୋଗାଣ ବିଭାଗର କର୍ମଚାରୀ ଓ ରେଲ୍‌ୱେ କର୍ମଚାରୀମାନଙ୍କୁ ଦିଆଯାଇଥିବା ନିର୍ଦ୍ଦେଶ ତୁରନ୍ତ ପ୍ରତ୍ୟାହାର କରାଯାଉ ।

'ମାର୍ଚ୍ଚ ୧୯୬୬ରେ କଳାହାଣ୍ଡିରେ ସଂପୂର୍ଣ୍ଣ ଶସ୍ୟହାନି ହେଲା । ସେତେବେଳେ ମୁଁ ସରକାରଙ୍କୁ ଯେଉଁ ରିପୋର୍ଟଟି ଦେଇଥିଲି, ସେଥିରେ ଲେଖିଥିଲି :

'ମରୁଡ଼ି ଫଳରେ ଲୋକଙ୍କ ଅବସ୍ଥା ଦିନକୁ ଦିନ ଦୁଃସହ ହେଉଛି । ଅବସ୍ଥା ପ୍ରାୟ ଦୁର୍ଭିକ୍ଷପ୍ରପୀଡିତ ଅବସ୍ଥା । ଦିନକୁ ଦିନ ଅପରାଧ ବଢ଼ିଚାଲିଛି । ଲୋକଙ୍କୁ ଯଥେଷ୍ଟ ରିଲିଫ୍ ଯୋଗାଇ ଦେବାର ଆବଶ୍ୟକତା ପଡୁଛି । ଅନାହାର ମୃତ୍ୟୁର ସମ୍ବାଦ ମିଳୁଛି । ଲୋକଙ୍କ ସ୍ୱାସ୍ଥ୍ୟ ଅବସ୍ଥାରେ ଦ୍ରୁତ ଅବନତି ଘଟୁଛି । ପୁଷ୍ଟିହୀନତା ବଢ଼ି ଚାଲିଛି । ବାପା ମା'ମାନେ ପିଲାମାନଙ୍କୁ ଛାଡ଼ି ଚାଲିଯାଉଛନ୍ତି । ଭିକାରି, ରୋଗୀ ଲୋକଙ୍କ ସଂଖ୍ୟା ବଢ଼ିଚାଲିଛି । ଅନେକ ଗ୍ରାମ ଜନଶୂନ୍ୟ ହୋଇଗଲାଣି । ମାଗଣା ଖାଦ୍ୟ ମିଳୁଥିବା ସ୍ଥାନରେ ଲୋକଙ୍କ ଭିଡ଼ ଜମୁଛି ।'

(୨୫.୦୩.୧୯୬୬ରେ ଗୋପନୀୟ ପତ୍ର ନଂ ୧୦୨୮)

ଓଡ଼ିଶାର ଅନ୍ୟତମ ପ୍ରତିଷ୍ଠିତ ସାମ୍ବାଦିକ ଗୋପାଳ ମିଶ୍ର ଜଗନ୍ନାଥ ପ୍ରସାଦଙ୍କର ସମସାମୟିକ ଓ ଅନ୍ୟତମ ଅନ୍ତରଙ୍ଗ ବନ୍ଧୁ । ଏବେ ମଧ୍ୟ ଜଗନ୍ନାଥ ପ୍ରସାଦ ଭୁବନେଶ୍ୱର ଆସିଲେ ଗୋପାଳବାବୁଙ୍କ ସହିତ ସାକ୍ଷାତ ନ ହେଲେ ତାଙ୍କ ଭୁବନେଶ୍ୱର

ରହଣି ଅସଂପୂର୍ଣ୍ଣ ହେଲା ବୋଲି ମନେ କରନ୍ତି । ୨୦୦୭ରେ ଗୋପାଳବାବୁଙ୍କ 'ରାଜ୍ୟ ରାଜନୀତି' ଗ୍ରନ୍ଥଟିର ଉନ୍ମୋଚନ ହୋଇଥିଲା ଭୁବନେଶ୍ୱରରେ ଲାର୍କ୍ ବୁକ୍ସର ମାଲିକ ମହେନ୍ଦ୍ର ମିଶ୍ରଙ୍କ ବାସଭବନରେ । ଉନ୍ମୋଚନ ଉତ୍ସବରେ ଉପସ୍ଥିତ ଥିଲେ ଜଗନ୍ନାଥ ପ୍ରସାଦ ।

୧୯୬୫-୬୬ରେ କଳାହାଣ୍ଡି ମରୁଡ଼ି ସମୟରେ ଗୋପାଳବାବୁ ଭେଟିଥିଲେ କଲେକ୍ଟର ଜଗନ୍ନାଥ ପ୍ରସାଦଙ୍କୁ । ସେ ସାକ୍ଷାତର ଅନୁଭୂତି ସଂପର୍କରେ ଗୋପାଳବାବୁ ସ୍ମରଣ କରନ୍ତି :

'୧୯୬୫-୬୬ ସାଲରେ କଳାହାଣ୍ଡିରେ ଦୁର୍ଭିକ୍ଷପ୍ରାୟ ଅବସ୍ଥା ଦେଖା ଦେଇଥିଲା । ସେତେବେଳେ ସେ ଥିଲେ ଜିଲ୍ଲାପାଳ । ମୁଁ ବୃତ୍ତିର ତାଡ଼ନାରେ ଯାଇଥିଲି ସେହିସବୁ ଅନଟନଗ୍ରସ୍ତ ଅଞ୍ଚଳକୁ । ଜଗନ୍ନାଥ ପ୍ରସାଦଙ୍କୁ ଦେଖା କଲି । ସରକାରୀ ଚାକିରିର ଶୃଙ୍ଖଳା ମଧ୍ୟରେ ରହି ସେ ମୋତେ ଅବସ୍ଥା ସଂପର୍କରେ ଯେତିକି ଚିତ୍ର ଦେଇଥିଲେ ମୋ ପାଇଁ ତାହା ଯଥେଷ୍ଟ ଥିଲା । କିନ୍ତୁ ଅବସ୍ଥାର ଚିତ୍ର ଦେବାବେଳେ ସେ ନିଜେ କୌଣସି ମତ ବା ମନ୍ତବ୍ୟ ଦେଇ ନ ଥିଲେ । କ୍ଷେତ୍ରରେ ପରିସ୍ଥିତି ଅନୁଧ୍ୟାନ କରି ଅମୃତବଜାର ପତ୍ରିକାରେ (ସେତେବେଳକୁ ମୁଁ ଓଡ଼ିଶା ପାଇଁ ଅମୃତବଜାର ପତ୍ରିକାର ଷ୍ଟାଫ୍ ପ୍ରତିନିଧି ହୋଇସାରିଥିଲି) ଲେଖିଥିଲି – ମରୁଡ଼ି ନୁହେଁ, କଳାହାଣ୍ଡି ଦୁର୍ଭିକ୍ଷଗ୍ରସ୍ତ । ତତ୍କାଳୀନ ମୁଖ୍ୟମନ୍ତ୍ରୀ ସ୍ୱର୍ଗତ ସଦାଶିବ ତ୍ରିପାଠୀ ସମ୍ବାଦଟି ପାଠକରି ମୋତେ ଡାକି ପରିସ୍ଥିତି ସଂପର୍କରେ ଆଲୋଚନା କରିଥିଲେ ।'

ଏହି ମରୁଡ଼ି ପ୍ରସଙ୍ଗରେ ୟୁନିଅନ୍ ପବ୍ଲିକ୍ ସର୍ଭିସ୍ କମିସନ୍‌ର ଅବସରପ୍ରାପ୍ତ ଚେୟାର୍‌ମ୍ୟାନ୍ ପୂର୍ଣ୍ଣଚନ୍ଦ୍ର ହୋତାଙ୍କ ସ୍ମୃତିଚାରଣ ମୂଲ୍ୟବାନ୍ ମନେହୁଏ :

ଅନୁପ ସିଂହଦେଓ, ରାସବିହାରୀ ବେହେରାଙ୍କ ସହ କଳାହାଣ୍ଡି ଫୁଟ୍‌ବଲ୍ ଟିମ୍, ଭବାନୀପାଟଣା, ୧୯୬୬



'୧୯୬୩ ନଭେମ୍ବରରେ କଳାହାଣ୍ଡିର ଜିଲ୍ଲାପାଳ ଭାବରେ ଜଗନ୍ନାଥବାବୁ ନିଯୁକ୍ତ ହେଲେ । କଳାହାଣ୍ଡି ଥିଲା ଭାରତର ଅନୁନ୍ନତ ଜିଲ୍ଲାମାନଙ୍କ ଭିତରେ ଅନ୍ୟତମ । ୧୯୬୫ରେ ସେଠାରେ ବର୍ଷା ଅଭାବରୁ ମରୁଡି ପଡ଼ିଲା । ମରୁଡ଼ି ଏତେ ଭୟଙ୍କର ଥିଲା ଯେ ଓଡ଼ିଶା ସରକାର ପ୍ରଥମ ଥର ନିମନ୍ତେ ରିଲିଫ୍ ସହାୟତା ଯୋଗାଇଦେବା ପାଇଁ ଜଣେ ସ୍ପେଶିଆଲ୍ ରିଲିଫ୍ କମିଶନର୍ ନିଯୁକ୍ତ କଲେ । ବରିଷ୍ଠ ତଥା ଅଭିଜ୍ଞ ଅଫିସର ଭି.ଏସ୍. ମାଥ୍ୟୁସ୍‌ଙ୍କୁ ଏ ପଦରେ ନିଯୁକ୍ତ କରାଗଲା । ଜଗନ୍ନାଥବାବୁ ଓ ମିଷ୍ଟର୍ ମାଥ୍ୟୁସ୍ ମରୁଡ଼ିପ୍ରପୀଡ଼ିତ ଅଞ୍ଚଳରେ ଗସ୍ତ କଲେ । ଲୋକମାନଙ୍କୁ ପିଇବା ପାଣି ଯୋଗାଇଦେବା ପାଇଁ ପୁରୁଣା କୂଅମାନଙ୍କୁ ଗଭୀର କଲେ, ନଦୀପଠାରେ ନୂଆ କୂଅ ଖୋଳାଇଲେ । ପୋଖରୀମାନଙ୍କର ପଙ୍କୋଦ୍ଧାର କରି ଜଳଯୋଗାଣର ସୁବିଧା କରାଇଲେ । ବହୁ ସ୍ଥାନରେ ଲୋକଙ୍କୁ ମାଗଣାରେ ରନ୍ଧାଖାଦ୍ୟ ମିଳିବାର ବ୍ୟବସ୍ଥା କରାଗଲା । ସଂକ୍ରାମକ ବ୍ୟାଧି ଯେପରି ନ ବ୍ୟାପେ, ସେଥିପାଇଁ ଡାକ୍ତରୀ ସାହାଯ୍ୟର ମଧ ବ୍ୟବସ୍ଥା ହେଲା । ମରୁଡ଼ି ସମସ୍ୟାର ମୁକାବିଲା କରିବା ପାଇଁ ଜଗନ୍ନାଥ ବାବୁ ପ୍ରାୟ ଦଶମାସ କାଳ ଦିନକୁ ଚଉଦରୁ ଷୋଳଘଣ୍ଟା କଠିନ ପରିଶ୍ରମ କରୁଥିଲେ ।'

କଳାହାଣ୍ଡି ଛାଡ଼ିବା ପରେ ଜଗନ୍ନାଥ ପ୍ରସାଦ କଳାହାଣ୍ଡିକୁ କେବେ ବି ଭୁଲି ନାହାନ୍ତି; କଳାହାଣ୍ଡି ତାଙ୍କୁ ମଧ ଭୁଲି ନାହିଁ । ଏକଦା ଓଡ଼ିଶା ବିଧାନସଭାରେ ଖଡ଼ିଆଳର ଏମ୍.ଏଲ୍.ଏ. ଥିବା ଅନୁପ ସିଂହଦେଓଙ୍କ ପତ୍ରରୁ ଏହା ସ୍ପଷ୍ଟ ହୁଏ :

ଖଡ଼ିଆଳ<br>୧୯.୧୧.୭୦

ପ୍ରିୟ ଶ୍ରୀ ଦାସ,

ଆପଣ ମୋତେ ମନେ ରଖିଛନ୍ତି ବୋଲି ଆଶା କରୁଛି । ଖଡ଼ିଆଳର ଲୋକେ ତଥାପି ଆପଣଙ୍କୁ ମନେ ରଖିଛନ୍ତି । ୧୯୬୫-୬୬ ଦୁର୍ଭିକ୍ଷ ସମୟରେ ଆପଣଙ୍କ ସଚ୍ଚୋଟ ସେବା ପାଇଁ ସେମାନେ ସବୁବେଳେ ଆପଣଙ୍କୁ ମନେ ରଖିଥିବେ ।

ଅନୁପ ସିଂହଦେଓ

କଳାହାଣ୍ଡିରେ ମରୁଡ଼ିର ଅନୁଭୂତି ଜଗନ୍ନାଥ ପ୍ରସାଦଙ୍କ ପରବର୍ତ୍ତୀ ଜୀବନରେ କଳାଛାଇଟିଏ ପରି ତାଙ୍କ ପଛେ ପଛେ ଗୋଡ଼ାଇଥିବା ପରି ମନେହୁଏ । ଅନୁଭୂତିର ପଚିଶି ବର୍ଷ ପରେ 'କଳାହାଣ୍ଡି' କବିତା ରଚନା କିମ୍ବା ତାଙ୍କର ଉପନ୍ୟାସ 'ଦେଶ କାଳ ପାତ୍ର'ରେ ନ'ଅଙ୍କ ଦୁର୍ଭିକ୍ଷର ବର୍ଣ୍ଣନାରେ ଏହା ସୂଚିତ ହୁଏ । ଏପରିକି ତାଙ୍କର 'ଗୁଜରାଟ ପରେ' (୨୦୦୩) କବିତାରେ । ସେଇଥିପାଇଁ ହୁଏତ ଅନ୍ୟାନ୍ୟ ବହୁ ସମସାମୟିକ କବିଙ୍କ ସହିତ ତୁଳନା କଲେ ମନେହୁଏ – ଜଗନ୍ନାଥ ପ୍ରସାଦଙ୍କ ସାମାଜିକ ଅଙ୍ଗୀକାର ବା ମାନବବାଦୀ ଚିନ୍ତାଧାରା ତାଙ୍କୁ ଏକ ସ୍ୱତନ୍ତ୍ର ପରିଚୟର ଅଧିକାରୀ କରାଏ ।

ତେବେ କଳାହାଣ୍ଡି ରହଣି ତାଙ୍କ ବ୍ୟକ୍ତିଗତ ତଥା ପାରିବାରିକ ଜୀବନରେ ଏକ ସୁଖମୟ ସମୟ ଥିଲା ନିଶ୍ଚୟ । ୧୯୬୦ରେ ତାଙ୍କର ବିବାହ ହୋଇଥିଲା ମିତ୍ରାଙ୍କ ସହିତ ।


ପତ୍ନୀ ମିତ୍ରାଙ୍କ ସହିତ ୧୯୬୦

ଜଗନ୍ନାଥ ପ୍ରସାଦଙ୍କୁ ବିବାହ କରିବା ପୂର୍ବରୁ ମିତ୍ରା ଦାସ ଜଣେ ସଙ୍ଗୀତ ଶିଳ୍ପୀ ଭାବରେ ପରିଚିତ ହୋଇସାରିଥିଲେ । ଅକ୍ଷୟ ମହାନ୍ତି, ସିକନ୍ଦର ଆଲାମ୍ ଓ ପ୍ରଣବ ପଟ୍ଟନାୟକଙ୍କ ଭଳି ପ୍ରମୁଖ କଣ୍ଠଶିଳ୍ପୀମାନଙ୍କର ସେ ସମସାମୟିକ ଓ ସହଗାୟିକା । ରେଭେନ୍ସା କଲେଜର ସାଂସ୍କୃତିକ କାର୍ଯ୍ୟକ୍ରମ ତଥା ଦିଲ୍ଲୀରେ ଅନୁଷ୍ଠିତ ଆନ୍ତଃ ବିଶ୍ୱବିଦ୍ୟାଳୟ ଯୁବ ଉତ୍ସବରେ ସେ ଭାଗ ନେଇଥିଲେ । ୧୯୬୦ରେ ତାଙ୍କର ବିବାହ ପରେ କିନ୍ତୁ ତାଙ୍କ ସଂଗୀତ ସାଧନା ପୂର୍ବଭଳି ଅବ୍ୟାହତ ରହିଲା ନାହିଁ । କେବଳ ବନ୍ଧୁ ମହଲରେ କେବେ କେବେ ସେ ସଙ୍ଗୀତ ଗାୟନ କଲେ । ତେବେ ଏବେ ମଧ ଅନେକେ ପଞ୍ଚମ ଦଶକରେ ମିତ୍ରାଙ୍କ ସଂଗୀତ ଗାନ ସ୍ମରଣ କରନ୍ତି ।

ସ୍ୱାମୀଙ୍କ ସହିତ ଦିଲ୍ଲୀରେ ଅବସ୍ଥାନ କରିବା ପରେ ସେ ଦିଲ୍ଲୀ ଅଲ୍ ଇଣ୍ଡିଆ ରେଡ଼ିଓରେ ଓଡ଼ିଆ ସମ୍ବାଦ ପାଠିକାଭାବରେ କାର୍ଯ୍ୟ କରିଛନ୍ତି । ଇଂରାଜୀ, ହିନ୍ଦୀ ଓ ବଙ୍ଗଳାରୁ କେତେକ ଗ୍ରନ୍ଥ ଓଡ଼ିଆକୁ ଅନୁବାଦ କରିଛନ୍ତି । ସେଥିମଧ୍ୟରେ ଅଛି, ନୀଳା ଚାନ୍ଦ (ହିନ୍ଦୀ), ଗୋଷ୍ଠବିହାରୀର ଜୀବନଯାପନ (ବଙ୍ଗଳା)ଇତ୍ୟାଦି । ଏହା ସାହିତ୍ୟ ଏକାଡେମୀ ଓ ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ ଦ୍ୱାରା ପ୍ରକାଶିତ । ମିତ୍ରାଙ୍କ ଅନୂଦିତ ମୁଲକ ରାଜ୍ ଆନନ୍ଦଙ୍କ 'କୁଲି' ଉପନ୍ୟାସ ପ୍ରକାଶ କରିଛନ୍ତି ଓଡ଼ିଶା ଟେକ୍ସଟ୍ ବୁକ୍ ବ୍ୟୁରୋ । ନ୍ୟାସ୍‌ନାଲ୍ କାଉନ୍‌ସିଲ୍ ଫର୍ ଏଜୁକେସନାଲ୍ ରିସର୍ଚ୍ଚ ଏଣ୍ଡ ଟ୍ରେନିଂର କେତେକ କାର୍ଯ୍ୟକ୍ରମରେ ମିତ୍ରା ସ୍ୱରଦାନ (ଡବିଂ) କରିଛନ୍ତି । ଦିଲ୍ଲୀର ମହିଳାମାନଙ୍କ ବିଭିନ୍ନ ଉନ୍ନତିମୂଳକ କାର୍ଯ୍ୟକ୍ରମ ତଥା 'ଉତ୍କଳିନୀ' ସହିତ ସେ ସଂପୃକ୍ତ । ୧୯୬୨ରେ ତାଙ୍କର ଏକମାତ୍ର କନ୍ୟା ଜନ୍ମଗ୍ରହଣ କରିଥିଲା । ତାହାର ସେ ନାମକରଣ କରିଥିଲେ ମୋନାଲିସା - ଡା'ଭିନ୍‌ସିଙ୍କ ଏକ ପେଣ୍ଟିଂର ନାମ ଅନୁଯାୟୀ ।

କଳାହାଣ୍ଡିର କର୍ମମୟ ଜୀବନ ସଂପର୍କରେ ସେ ସମୟରେ ତାଙ୍କୁ ଅନ୍ତରଙ୍ଗ ଭାବରେ ଜାଣିଥିବା ରାସବିହାରୀ ବେହେରାଙ୍କ ସ୍ମୃତିଚାରଣ ପ୍ରାସଙ୍ଗିକ ମନେହୁଏ । ପରବର୍ତ୍ତୀ ଜୀବନରେ ରାସବିହାରୀ ହୋଇଥିଲେ ଓଡ଼ିଶାର ଜଣେ ପ୍ରତିଷ୍ଠିତ ଜନନେତା । ଏକଦା କଂଗ୍ରେସ ମନ୍ତ୍ରିମଣ୍ଡଳରେ ସେ ଥିଲେ ସଭ୍ୟ । ରାସବିହାରୀଙ୍କ ଭାଷାରେ :

'ଜଗନ୍ନାଥ ପ୍ରସାଦ ଦାସ, କଳାହାଣ୍ଡି ଜିଲ୍ଲାପାଳ ୧୯୬୫-୬୬ ମସିହାରେ ଥିବା ସମୟରେ ମୁଁ ତାଙ୍କ ସହିତ ବିଭିନ୍ନ କାର୍ଯ୍ୟକ୍ରମ ମାଧ୍ୟମରେ ସାକ୍ଷାତ ଆଲୋଚନା



୧୯୬୪

କରିଛି । ଜିଲ୍ଲାପାଳ ଦାୟିତ୍ୱରେ ରହି, ବହୁ ବ୍ୟସ୍ତତା ଭିତରେ ମଧ୍ୟ ଖେଳ ପ୍ରତି ତାଙ୍କର ପ୍ରଗାଢ଼ ଆଗ୍ରହ ଥିଲା । ଟେନିସ୍ ଖେଳ ପ୍ରତି ଆଗ୍ରହ ଅତ୍ୟଧିକ । ସେ ମଧ୍ୟ ଜଣେ ଉତ୍ତମ ଟେନିସ୍ ଖେଳାଳୀ । ହ୍ୱିଲର୍ସ କ୍ଲବ (ବର୍ତ୍ତମାନ ମ୍ୟୁନିସିପାଲିଟି ଅଫିସ୍) ପଡ଼ିଆରେ ହାର୍ଡ଼୍ କୋର୍ଟ ନିର୍ମାଣ କରିବାରେ ତାଙ୍କର ଉଦ୍ୟମ ବାସ୍ତବିକ ପ୍ରଶଂସନୀୟ । ଦିନକୁ ଦିନ ଖେଳାଳୀଙ୍କ ସଂଖ୍ୟା ବୃଦ୍ଧି ଘଟୁଥିବା ଯୋଗୁଁ ସକାଳ ଓ ସନ୍ଧ୍ୟା ପରେ ମଧ୍ୟ ଖେଳାଳୀଙ୍କୁ ଅଧିକ ସୁଯୋଗ ଦେବାପାଇଁ ନାଇଟ୍ କୋର୍ଟ୍, ଫ୍ଲଡ୍ ଲାଇଟ୍ ପାଇଁ ବ୍ୟବସ୍ଥା କରି ଉଚ୍ଚ ପୋଲ୍ ପୋତାଯାଇ ରାତ୍ରରେ ମଧ୍ୟ ଟେନିସ୍ ଖେଳ ହେଉଥିଲା ।

'ଜିଲ୍ଲାପାଳ ଶ୍ରୀ ଜଗନ୍ନାଥ ପ୍ରସାଦ ଦାସ ପ୍ରତିଦିନ, ଏପରିକି ବିଭିନ୍ନ ବ୍ଲକ୍ ଗସ୍ତରେ ଥିଲେ ମଧ୍ୟ କାମ ଶେଷକରି ସନ୍ଧ୍ୟା ୪ଟା ବେଳକୁ କାର୍ଯ୍ୟରୁ ଫେରି ଟେନିସ୍ ଫିଲ୍ଡରେ ଆସି ଟେନିସ୍ ଖେଳିବେ । ଭୁବନେଶ୍ୱର ଗସ୍ତରେ ଗଲେ ତାହା ସମ୍ଭବ ହେଉ ନ ଥିଲା । କଳାହାଣ୍ଡିରେ ମଧ୍ୟ ଶ୍ରେଷ୍ଠ ଟେନିସ୍ ଖେଳାଳୀସବୁ ଟେନିସ୍ ଖେଳୁଥିଲେ; କୁମୁଦନାଥ ବାବୁ, ଏଡ୍‌ଭୋକେଟ୍ ଗଣାଧିପ ଭୋଇ, ଏଡ୍‌ଭୋକେଟ୍ ପରମାନନ୍ଦ ବେହେରା ପ୍ରଭୃତି । ମୁଁ ସେମାନଙ୍କ ସମକକ୍ଷ ଖେଳାଳୀ ହୋଇ ନ ଥିବା ଯୋଗୁଁ ପ୍ରତିଦିନ ସକାଳରୁ ଅଭ୍ୟାସ କରି ମାସକ ପରେ ମୋତେ ମଧ୍ୟ ସେମାନଙ୍କ ସହ ଖେଳିବା ପାଇଁ ସୁଯୋଗ ଦେଇଥିଲେ । **Tennis standard** ବୃଦ୍ଧି କରିଥିବା ଯୋଗୁଁ ଶ୍ରୀ ଦାସ ଆମକୁ ସ୍ୱାଗତ ଜଣାଇଥିଲେ । ଜେ.ପି. ଦାସ ଟେନିସ୍ ଖେଳ ପ୍ରତି ଆଗ୍ରହ ସହ ଜିଲ୍ଲା ଏଥ୍‌ଲେଟିକ୍ ଏସୋସିଏସନ୍‌ର ସଭାପତି ହିସାବରେ ଜିଲ୍ଲାରେ କ୍ରୀଡାର ବିକାଶ ସହ ଫୁଟ୍‌ବଲ୍ ଖେଳପ୍ରତି ଆଗ୍ରହ ପ୍ରକାଶ କରି ଖେଳାଳୀଙ୍କୁ ଉତ୍ସାହିତ କରୁଥିଲେ ।

'ଜିଲ୍ଲା ଏଥ୍‌ଲେଟିକ୍ ଏସୋସିଏସନ୍‌ର ସଂପାଦକ ଦାୟିତ୍ୱ ମୁଁ ବହନ କରିବା ପରେ, ଜିଲ୍ଲାର ଖେଳାଳୀମାନଙ୍କୁ ସଂଗଠିତ କରି ଷ୍ଟାଡିୟମ୍ ନିର୍ମାଣ ପାଇଁ ଉଦ୍ୟମ କଲି । ମାତ୍ର ବାରବାଟି ରାଫଲ୍ ବନ୍ଦ ହୋଇଯିବା ଫଳରେ ଷ୍ଟାଡିୟମ ନିର୍ମାଣ ପାଇଁ ଓଡ଼ିଶା ଅଲମ୍ପିକ୍ସ୍ ଆସୋସିଏସନ୍‌ର ଆର୍ଥିକ ସାହାଯ୍ୟ ମିଳିବା ସମ୍ଭବ ହେଲା ନାହିଁ । ତେଣୁ ସର୍ବସାଧାରଣଙ୍କ ଆର୍ଥିକ ସହାୟତାରେ ନିର୍ମାଣ ପାଇଁ ଉଦ୍ୟମ ଜାରି ରଖିଲି । ଏ ଭିତରେ ଜିଲ୍ଲାପାଳ ଜେ.ପି. ଦାସ କଳାହାଣ୍ଡିରୁ ବଦଳି ହୋଇଗଲେ । ମାତ୍ର ଯେତେବେଳେ କଳାହାଣ୍ଡି ଗସ୍ତରେ ଆସନ୍ତି, ଅଫିସ୍ ଇନ୍‌ସ୍‌ପେକ୍‌ଶନ୍ ସାରି ସନ୍ଧ୍ୟା ୪ଟା ବେଳକୁ କାରରେ ମୋ ଘରକୁ ଆସି ମୋତେ ଡାକି, 'ଚାଲ ତୁମ ଷ୍ଟାଡିୟମ୍ ନିର୍ମାଣ କେତେଦୂର ଗଲା ଦେଖି ଆସିବା' କହି, ମୋତେ ଗାଡ଼ିରେ ବସାଇ

ନେଉଥିଲେ । ଲାଲବାହାଦୂର ଶାସ୍ତ୍ରୀ ଷ୍ଟାଡିୟମ୍ ନିର୍ମାଣ ଦେଖିବା ପାଇଁ ତାଙ୍କ ଆଗ୍ରହ ମୋତେ ବହୁ ଗୁଣରେ ଉତ୍ସାହିତ କରିଛି । ଷ୍ଟାଡିୟମ୍ ନିର୍ମାଣ ବାଉଣ୍ଡ୍ରି ୱାଲ୍ ୭ ଏକର, ୧୧୦ ଫୁଟ ଲମ୍ବ ୩୦ ଫୁଟ ଓସାରର ଷ୍ଟାଡିୟମ୍ କାର୍ଯ୍ୟ ଦେଖି ବିସ୍ମିତ ହୋଇ ମୋତେ ପ୍ରଶ୍ନ କରନ୍ତି, ଏତେ ଟଙ୍କା ଆବଶ୍ୟକ, କେଉଁଠୁ ପାଇବ ?' 'ଆନ୍ତଃ ଜିଲ୍ଲା ଫୁଟବଲ୍ ଟୁର୍ଣ୍ଣାମେଣ୍ଟ ବେଳକୁ ଟିକଟ କରି ଅର୍ଥ ସଂଗ୍ରହ କରିଛୁ । ଖର୍ଚ୍ଚ କରି ଅବଶିଷ୍ଟ ଟଙ୍କାରେ ନିର୍ମାଣ କାର୍ଯ୍ୟ ଚାଲୁ ରଖିଛୁ ।'

'ଷ୍ଟାଡିୟମ୍‌ର ଅଗ୍ରଗତି ତାଙ୍କ ମନକୁ ପ୍ରଭାବିତ କରିଛି । ସେ ତତ୍‌କାଳୀନ Orissa Olympic Secretary ଭୈରବ ଚନ୍ଦ୍ର ମହାନ୍ତିଙ୍କୁ କଟକର ବାରବାଟୀ ଷ୍ଟାଡିୟମ୍‌ରେ ସାକ୍ଷାତ୍ କରି କହିଲେ, 'କଳାହାଣ୍ଡି ଭଳି ଏକ ଅନୁନ୍ନତ ଜିଲ୍ଲାରେ ଜଣେ ଦିନରାତି ପରିଶ୍ରମ କରି ଲୋକଙ୍କଠୁ ଅର୍ଥ ସଂଗ୍ରହ କରି ଷ୍ଟାଡିୟମ୍ ନିର୍ମାଣରେ ଲାଗିଛି । ତାଙ୍କୁ ଆପଣ ଆର୍ଥିକ ସାହାଯ୍ୟ ପ୍ରଦାନ କରି ଉତ୍ସାହିତ କରିବା ଉଚିତ ।'

'ତାଙ୍କ ଅନୁରୋଧରେ ପ୍ରଭାବିତ ହୋଇ, ଭୈରବ ମହାନ୍ତି ଆସି ଜିଲ୍ଲା କ୍ରୀଡା ପ୍ରତିଯୋଗିତାରେ ଯୋଗଦେଇ ଷ୍ଟାଡିୟମ୍ ନିର୍ମାଣର ଅଗ୍ରଗତି, ମନ୍ଥରତା ସବୁ ଉପଲବ୍ଧି କରି କଟକ ଫେରିଯାଇ ସ୍ୱତନ୍ତ୍ର ଅଲିମ୍ପିକ୍ କମିଟିର ମିଟିଙ୍ଗ୍ ଡାକି କଳାହାଣ୍ଡି ଲାଲବାହାଦୂର ଶାସ୍ତ୍ରୀ ଷ୍ଟାଡିୟମ୍ ପାଇଁ ୧୫୦୦୦ ଟଙ୍କା ଆର୍ଥିକ ଅନୁଦାନ ଚେକ୍ ମାଧମରେ ପଠାଇବାରୁ ଷ୍ଟାଡିୟମ୍ ନିର୍ମାଣ ତ୍ୱରାନ୍ୱିତ କରିବା ସମ୍ଭବ ହୋଇଥିଲା ।

'ଶ୍ରୀ ଜେ.ପି. ଦାସଙ୍କ ଏହି ସହଯୋଗ ମୋ ଜୀବନରେ ମୁଁ ଭୁଲିପାରିବି ନାହିଁ । ଜିଲ୍ଲାରୁ ଅନ୍ୟତ୍ର ବଦଳି ହୋଇଯାଇଥିଲେ ମଧ କଳାହାଣ୍ଡି ଜନସାଧାରଣଙ୍କ ପ୍ରତି ଏବଂ କର୍ତ୍ତବ୍ୟନିଷ୍ଠା ପ୍ରତି ତାଙ୍କର ସହଯୋଗ ଅବିସ୍ମରଣୀୟ ।

'କଳାହାଣ୍ଡି ଜିଲ୍ଲାରେ କ୍ରମାଗତ ମରୁଡ଼ି ପଡ଼ି ଲୋକେ ହନ୍ତସନ୍ତ ହୋଇପଡୁଥିଲେ । ୧୯୬୬ ମସିହାର ଭୟାବହ ମରୁଡ଼ିରେ ଖଡ଼ିଆଳ ଅଞ୍ଚଳର ଶହ ଶହ ଲୋକ ଭୋକ ବିକଳରେ ମୃତ୍ୟୁ ମୁଖରେ ପଡ଼ିବା ଯୋଗୁଁ ସମଗ୍ର ଦେଶରେ ଚହଳ ପଡ଼ିଗଲା । ପିଲା ବିକ୍ରିଠୁ ବହୁ କରୁଣ କାହାଣୀ ଇତିହାସର ବିଷୟବସ୍ତୁ ହୋଇଯାଇଛି । ତତ୍‌କାଳୀନ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ କଳାହାଣ୍ଡି ଗସ୍ତରେ ଆସି ସ୍ୱଚକ୍ଷୁରେ ମରୁଡ଼ିପ୍ରପୀଡ଼ିତ, ଅନାହାରକ୍ଲିଷ୍ଟ, ଖଡ଼ିଆଳ, ସିନାପାଲିର ହଜାର ହଜାର ଭୋକିଲା ଜନତାଙ୍କ ଅଶ୍ରୁଭରା ନୟନ ଏବଂ ଭୋକିଲା ପେଟ, ଅସ୍ଥିକଙ୍କାଳସାର ମଣିଷଙ୍କୁ ଦେଖି ଶୋକରେ ଅଭିଭୂତ ହୋଇଗଲେ । ସେହି ସମୟରେ ଯୁବକ ଜେ.ପି. ଦାସ

ଟେନିସ୍ ଖେଳାଳୀ ଜୟଦୀପ ମୁଖାର୍ଜୀଙ୍କ ସହ ୧୯୭୨





କଳାହାଣ୍ଡି, ୧୯୬୬

କଳାହାଣ୍ଡିର ଜିଲ୍ଲାପାଳ ଦାୟିତ୍ୱରେ ଥିଲେ । ଯୁବକ ଜିଲ୍ଲାପାଳଙ୍କୁ ଦେଖି ସନ୍ଦେହରେ ଶ୍ରୀମତୀ ଗାନ୍ଧୀ ଆର୍.ଡି.ସି.ଙ୍କୁ ପ୍ରଶ୍ନ କରିଥିଲେ – 'କ'ଣ ଏହି ଯୁବକ କଳାହାଣ୍ଡିର ଜିଲ୍ଲାପାଳ ?' ଉତ୍ତର – 'ୟେସ୍ ମାଡାମ୍' ।

ଯୁବକର ଉତ୍ସାହ, ଉଦ୍ୟମ, ନିଷ୍ଠା ବଳରେ ସବୁ କିଛି ସମ୍ଭବ । ତାହା ଯୁବ କଲେକ୍ଟର ତାଙ୍କ କାର୍ଯ୍ୟକାଳ ମଧ୍ୟରେ ପ୍ରମାଣିତ କରିଯାଇଛନ୍ତି । କଳାହାଣ୍ଡିର ଭୟାବହ ମରୁଡି ସମୟରେ ଦେଶ ବିଦେଶରୁ ବହୁ ସାହାଯ୍ୟ ଆସି ପହଞ୍ଚିଲା । ତାକୁ ଜିଲ୍ଲାପାଳ ରାତିଦିନ ଲାଗିପଡ଼ି ଭୋକିଲା ଲୋକଙ୍କ ପାଖରେ ପହଞ୍ଚାଇବା ପାଇଁ ସମସ୍ତ କର୍ମଚାରୀଙ୍କୁ ଲଗାଇ ଦେଲେ । ଭାରତ ସେବକ ସମାଜ ତଥା ଜିଲ୍ଲା ପ୍ରଶାସନର ଆନ୍ତରିକ ଉଦ୍ୟମ ଫଳରେ ଭୋକିଲା ଜନତାଙ୍କୁ ରିଲିଫ୍ ପ୍ରଦାନରେ କୌଣସି ତ୍ରୁଟି ହୋଇ ନ ଥିଲା । ସେଥିପାଇଁ ଜିଲ୍ଲାପାଳଙ୍କ ଉଦ୍ୟମ ବାସ୍ତବିକ ପ୍ରଶଂସନୀୟ ।

'ବହୁ ସମ୍ବାଦପତ୍ରର ସାମ୍ବାଦିକମାନେ କଳାହାଣ୍ଡି ଗସ୍ତରେ ଆସି ଭୋକିଲା ଲୋକଙ୍କ ଫଟୋଚିତ୍ର ଖବରକାଗଜରେ ପ୍ରକାଶ କରି ସମଗ୍ର ଦେଶରେ ଚହଳ ସୃଷ୍ଟି କରିଥିଲେ । ମୁଁ ସେତେବେଳେ ଦୈନିକ 'କଳିଙ୍ଗ' ଖବରକାଗଜର ଜିଲ୍ଲା ସାମ୍ବାଦିକ ରୂପେ କାର୍ଯ୍ୟ କରୁଥିଲି । ଜିଲ୍ଲାର ବହୁ ସମସ୍ୟା ଖବରକାଗଜରେ ପ୍ରକାଶ କରି

ଜିଲ୍ଲା ପ୍ରଶାସନର ଦୃଷ୍ଟି ଆକର୍ଷଣ କରିଥିଲି । ରାଜନୈତିକ ଦଳ ମଧ୍ୟ ତାର ଫାଇଦା ଉଠାଇବାକୁ ତତ୍ପର ହୋଇପଡିଥିଲେ । ଜିଲ୍ଲା ପ୍ରଶାସନ ଗୁରୁତ୍ୱପୂର୍ଣ୍ଣ ଖବରକୁ ନେଇ ସାମ୍ବାଦିକମାନଙ୍କ ସହ ଆଲୋଚନା କରି ତା'ର ପ୍ରତିକାର ମଧ୍ୟ କରୁଥିଲେ । ଏହା ପ୍ରଶାସନର ଦକ୍ଷତା ଏବଂ ଭାବମୂର୍ତ୍ତି ବୃଦ୍ଧିରେ ସହାୟକ ହୋଇଥିଲା । ଆଜିକାଲି ପ୍ରଶାସନ ଏ ଦିଗରେ ସଚେତନ ଥିଲାଭଳି ମନେ ହେଉ ନାହିଁ । ବହୁ ଗୁରୁତ୍ୱପୂର୍ଣ୍ଣ ସମ୍ବାଦକୁ ଦେଖି ନ ଦେଖିଲାଭଳି ଟାଳିଦେବା ପାଇଁ ଉଦ୍ୟମ କରି ପ୍ରଶାସନର ଦୁର୍ବଳତାକୁ ଘୋଡ଼ାଇବାକୁ ଉଦ୍ୟମ କରି ଜନ ଅସନ୍ତୋଷର ଶିକାର ହେଉଛି ।

'ଜିଲ୍ଲାର ଅଗଣିତ ଚାଷୀମାନଙ୍କୁ 'ତକାବି ଋଣ' ପ୍ରଦାନ କରିବାରେ ଜିଲାପାଳ ସକ୍ରିୟ ଭୂମିକା ଗ୍ରହଣ କରି ବିଭିନ୍ନ ବ୍ଲକ୍ ଗସ୍ତ କରି ପ୍ରତ୍ୟକ୍ଷ ଭାବରେ ଚାଷୀ ଋଣ ପାଇବାରେ ଯେଭଳି କୌଣସି ଅସୁବିଧାର ସମ୍ମୁଖୀନ ନ ହୁଏ, ତାହା ସେ ବ୍ୟକ୍ତିଗତ ଭାବରେ ତଦାରଖ କରିବା ଫଳରେ ସମଗ୍ର ଜିଲ୍ଲାର କର୍ମଚାରୀମାନେ ନିଷ୍ଠାର ସହ ତତ୍ପରତା ପ୍ରଦର୍ଶନ କରି ଲୋକଙ୍କୁ ଋଣ ଯୋଗାଇବାରେ ସହାୟକ ହୋଇପାରିଥିଲେ ।

'ଜିଲ୍ଲାପାଳଙ୍କ ତତ୍ପରତା ଉପରେ ଅଧସ୍ତନ କର୍ମଚାରୀମାନେ ମଧ୍ୟ ନିଜ କର୍ତ୍ତବ୍ୟ ପ୍ରତି ସଚେତନ ହୋଇଥାନ୍ତି । ଫଳରେ ସାଧାରଣ ଜନତା ତା'ର ଉପକାର ପାଇ ପାରିଥାଏ । କଳାହାଣ୍ଡିର ଭୟାବହ ମରୁଡ଼ି ସମୟରେ ଖେଳପ୍ରିୟ ଜେ.ପି. ଦାସ ଜଣେ କର୍ତ୍ତବ୍ୟନିଷ୍ଠ ଜିଲ୍ଲାପାଳରୂପେ କର୍ମ ହିଁ ଧର୍ମ ରୂପେ ନିଜ କର୍ତ୍ତବ୍ୟକୁ ସୁଚାରୁରୂପେ କାର୍ଯ୍ୟକାରୀ କରିଥିବା ଯୋଗୁଁ କଳାହାଣ୍ଡିର ସାଧାରଣ ଜନତା ତାଙ୍କୁ ଭୁଲିପାରି ନାହାନ୍ତି । ତେଣୁ ଏଭଳି ଏକ ଦୁର୍ଦ୍ଦିନରେ ବହୁ ଭୋକିଲା ଲୋକଙ୍କ ମୁହଁରେ ଆହାର ଯୋଗାଇବାରେ ତାଙ୍କ କାର୍ଯ୍ୟ ସ୍ମରଣୀୟ । ତାଙ୍କର ଟିକକ ଅବହେଳାରେ ବହୁ ଜନସାଧାରଣ ହନ୍ତସନ୍ତ ହୋଇଯାଇଥାନ୍ତେ । ବିପଦକୁ ଦୃଢ଼ତାର ସହ ମୁକାବିଲା କରିବା ହେଉଛି ସାହସିକତା । ତାହା ଜେ.ପି. ଦାସ ତାଙ୍କ କାର୍ଯ୍ୟଦକ୍ଷତା ବଳରେ ନିଷ୍ଠାର ସହ ପାଳନ କରିପାରିଛନ୍ତି । ସେଥିପାଇଁ ଆମ ସଭିଙ୍କ ନମସ୍ୟ ।'

ରାସବିହାରୀ ବେହେରା
ଭବାନୀପାଟଣା, କଳାହାଣ୍ଡି
୨୮.୧.୦୮

# 'କଳାଝିଅ'ର ପ୍ରେମରେ



ବ୍ଲାକ୍ ଗାର୍ଲ

**'ଆ**ଶ୍ଚର୍ଯ୍ୟ ! ଏ 'କଳାଝିଅ'ଟି ତୁମର ? ମୁଁ ଏହାର ପ୍ରେମରେ ପଡ଼ିଛି ।' ଜଗନ୍ନାଥ ପ୍ରସାଦଙ୍କ 'କଳାଝିଅ'ର ପ୍ରେମରେ ପଡ଼ି ଫେବୃୟାରୀ ୭, ୧୯୭୩ରେ ଏହିପରି ଲେଖିଥିଲେ ଭାରତର ଅନ୍ୟତମ ପ୍ରମୁଖ ଚଳଚ୍ଚିତ୍ର ନିର୍ଦ୍ଦେଶକ ମୃଣାଳ ସେନ୍ ।

କଳାଝିଅ (ବ୍ଲାକ୍ ଗାର୍ଲ) ଜଗନ୍ନାଥ ପ୍ରସାଦଙ୍କର ଗୋଟିଏ ସଫଳ ଚିତ୍ର । ଚିତ୍ରଟି ପ୍ରଦର୍ଶିତ ହୋଇଥିଲା ୧୯୭୧ ମାର୍ଚ୍ଚରେ, ଭୁବନେଶ୍ୱରରେ ଅନୁଷ୍ଠିତ ତାଙ୍କର ଏକକ ଚିତ୍ର ପ୍ରଦର୍ଶନୀରେ । ସେତେବେଳକୁ ଅବଶ୍ୟ ସେ କବି ଓ ପ୍ରଶାସକ ଭାବରେ ସୁନାମ ଅର୍ଜନ କରିସାରିଥିଲେ । କିନ୍ତୁ ତାଙ୍କ ଚିତ୍ର ଅଙ୍କନ ସଂପର୍କରେ ଅଳ୍ପ କେତେଜଣ ଅନ୍ତରଙ୍ଗ ବଂଧୁଙ୍କୁ ବାଦ୍ ଦେଲେ ଅନ୍ୟମାନେ ଅବହିତ ନ ଥିଲେ । ୧୯୭୧ରେ ହିଁ ଅନୁଷ୍ଠିତ ହୋଇଥିଲା ତାଙ୍କର ପ୍ରଥମ ଓ ଆମର ଦୁର୍ଭାଗ୍ୟକୁ ଶେଷ ଚିତ୍ର ପ୍ରଦର୍ଶନୀ । ସେ ଖୁବ୍ କମ୍ ଚିତ୍ର ଆଙ୍କିଛନ୍ତି । ତାହାର ସଂଖ୍ୟା କୋଡ଼ିଏ ତିରିଶିରୁ ଅଧିକ ନୁହେଁ । ସେଥିମଧ୍ୟରୁ କଳାଝିଅ, ରୂପ, ନୀଳ ରମଣୀ, ଓମ୍, ସ୍ତୁତିଚାରଣ, ଆଭିମୁଖ୍ୟ, ମୃତ ସହର, ଧାବକ ପ୍ରଭୃତି ବିଶେଷ ଉଲ୍ଲେଖଯୋଗ୍ୟ । ଜଗନ୍ନାଥ ପ୍ରସାଦ ସପ୍ତମ ଦଶକ ପରେ କୌଣସି କାରଣରୁ ଚିତ୍ର ଅଙ୍କନରେ ଆଉ ମନୋନିବେଶ କଲେ ନାହିଁ । ତାଙ୍କର ବଂଧୁ ଗୋପାଳ ମିଶ୍ର ଏ ସଂପର୍କରେ କହନ୍ତି :

ଅସିତ୍ ମୁଖାର୍ଜୀଙ୍କ ଅଙ୍କିତ ସ୍କେଚ୍, ୧୯୭୧



'ମୋର ସ୍ପଷ୍ଟ ମନେ ଅଛି, ଭୁବନେଶ୍ୱର କ୍ଲବ୍‌ରେ ଜଗନ୍ନାଥ ପ୍ରସାଦଙ୍କର ଚିତ୍ରଟିଏ ଟଙ୍ଗା ହୋଇଥିଲା । ପରେ ଚିତ୍ରଟି କୁଆଡ଼େ ଗଲା ମୋତେ ଜଣା ନାହିଁ । ଶୁଣିଲି, କ୍ଲବ୍‌ର କେତେକ ପୁରୁଣା ଜିନିଷ ସହିତ ଚିତ୍ରଟି ନିଲାମ କରିଦିଆଗଲା । କଥାଟା ମୋତେ ଖୁବ୍ ବାଧିଲା । ଜଗନ୍ନାଥ ପ୍ରସାଦ ମୂଳରୁ କ୍ଲବ୍ ସହିତ ସଂପୃକ୍ତ ଥିଲେ; କ୍ଲବ୍‌ର ସାଂଗଠନିକ କାର୍ଯ୍ୟରେ ବିଶେଷ ସାହାଯ୍ୟ କରିଥିଲେ । କ୍ଲବ୍‌କୁ ସେ ଦାନ କରିଥିଲେ ତାଙ୍କର ଗୋଟିଏ ଚିତ୍ର । ଆମେ ଯେଉଁମାନେ କ୍ଲବ୍ ସହିତ ସଂପୃକ୍ତ, ଚିତ୍ରଟି ସଂରକ୍ଷିତ ରଖିବା ଆମର ଦାୟିତ୍ୱ ଥିଲା ।'

(ଭୁବନେଶ୍ୱର କ୍ଲବ୍ ବୁଲେଟିନ୍, ଫେବୃୟାରୀ – ମାର୍ଚ୍ଚ, ୧୯୮୯)

ଚିତ୍ର ପ୍ରତି ଜଗନ୍ନାଥ ପ୍ରସାଦଙ୍କ ଆକର୍ଷଣ ଥିଲା ଶୈଶବରୁ । ତାଙ୍କର ବାଲ୍ୟବଂଧୁ ମୁରଲୀଧର ଶତପଥୀ କହନ୍ତି :

'ମୋର ମନେଅଛି, ଥରେ ଆମ ଶ୍ରେଣୀର ହାତଲେଖା ପତ୍ରିକାରେ ପଣ୍ଡିତ ମଦନ ମୋହନ ମାଲବ୍ୟଙ୍କର ଗୋଟିଏ ସୁନ୍ଦର ଚିତ୍ର ଜଗନ୍ନାଥ ଆଙ୍କିଥିଲା । ପେନ୍‌ସିଲ୍‌ରେ ଅଙ୍କା ହୋଇଥିବା ସେ ଚିତ୍ରଟି ଦେଖି ସମସ୍ତେ ଆଶ୍ଚର୍ଯ୍ୟ ହୋଇଯାଇଥିଲେ । କ୍ଲାସ୍‌ରେ ପ୍ରଥମ ହେବା ସହିତ ଛୋଟ କବିତା ଲେଖିବା ଓ ପେନ୍‌ସିଲ୍‌ରେ ଛୋଟ ଛୋଟ ଚିତ୍ର ଆଙ୍କିବା ଜଗନ୍ନାଥର ପିଲାଦିନରୁ ହିଁ ସଉକ ଥିଲା ।' (ସ୍ମୃତିଚାରଣ)

୧୯୭୧ରେ ଅନୁଷ୍ଠିତ ଏକକ ପ୍ରଦର୍ଶନୀ ପ୍ରମାଣିତ କରିଥିଲା – ଆଲାହାବାଦ ବିଶ୍ୱବିଦ୍ୟାଳୟ କଳା କ୍ଲାସରେ କିଛିଦିନ ଯୋଗ ଦେବା ପରେ କୌଣସି ଆନୁଷ୍ଠାନିକ ପ୍ରଶିକ୍ଷଣର ସାହାଯ୍ୟ ନ ନେଇ ମଧ୍ୟ ଜଗନ୍ନାଥ ପ୍ରସାଦ ହୋଇପାରିଥିଲେ ଜଣେ ପୋଖତ ଚିତ୍ରଶିଳ୍ପୀ । ପ୍ରଦର୍ଶନୀର ପ୍ରଚାରପତ୍ର ବା ବ୍ରୋସ୍ୟୁୟର୍‌ରେ ଲେଖାଥିଲା :

'ଜେ. ପି. ଦାସ ବୃତ୍ତିରେ ପ୍ରଶାସକ; ପ୍ରବୃତ୍ତିରେ ବୁଦ୍ଧିଜୀବୀ । ଚିତ୍ର ହୁଏତ ତାଙ୍କର ପ୍ରଥମ ପ୍ରେମ ନୁହେଁ । କିନ୍ତୁ ଏଥିରେ ସେ ଅପରିଣତ ନୁହନ୍ତି । ତାଙ୍କର ଏହା ପ୍ରଥମ ପ୍ରଦର୍ଶନୀ । ସେ ନିଜେ ନିଜର ଶିକ୍ଷକ । ସେ ପ୍ରମାଣ କରିଛନ୍ତି, ସେ ଆମ ଚିତ୍ରଶିଳ୍ପୀମାନଙ୍କ ମଧ୍ୟରେ ଜଣେ । ତାଙ୍କ ଭଳି ଆମ ସମସ୍ତଙ୍କ ଭିତରେ ନିଦ୍ରିତ ରହିଛି ତୂଳୀ ଧରିବାର ପ୍ରେରଣା । ଏହି ପ୍ରଦର୍ଶନୀ ଦର୍ଶକମାନଙ୍କ ମଧ୍ୟରେ ସେହି ପ୍ରେରଣା ଜାଗ୍ରତ କରୁ ।' (ଅସିତ୍ ମୁଖାର୍ଜୀ, ସଭାପତି, ଶିଳ୍ପୀ ସଂସଦ, ଭୁବନେଶ୍ୱର)



Not his first love —

By profession an administrator.
By training an intellectual
Sri J. P. Das is no tenderfoot
in painting ; this — his first
show will depict.

Self - taught as he is, Sri Das
also would prove himself
one among us.

The intuition by which Sri Das
took up the brush is also
dormant in most of us.

Let this venture instil a
confidence in seekers.

Asit Mukherjee
President, Silpisamsad, Bhubaneswar.

ଚିତ୍ର ପ୍ରଦର୍ଶନୀ, ୧୯୭୧

ଏହି ଚିତ୍ର ପ୍ରଦର୍ଶନୀ କରିବାରେ ଚିତ୍ରଶିଳ୍ପୀ ଅସୀମ୍ ବସୁଙ୍କର ଏକ ଭୂମିକା ଥିଲା । ସେ ଲେଖିଛନ୍ତି :

'ମୋ' ଛବିର ଗୋଟିଏ ପ୍ରଦର୍ଶନୀ କରିବି । କେମିତି କ'ଣ କରିବି, କେଉଁଠି କରିବି, କାହା ମାଧ୍ୟମରେ କରିବି ସେ ବିଷୟରେ ଆଲୋଚନା କରିବାକୁ ଆପଣଙ୍କ ପାଖକୁ ଆସିଛି', କହିଲେ ଜେ.ପି.ଦାସ, ଆଇ.ଏ.ଏସ୍. ।

ମୁଁ ବିସ୍ମୟର ସହିତ ପ୍ରଶ୍ନ କଲି, 'କାହା ଛବି କହିଲେ ? ଆପଣଙ୍କର ?'

ସେ କହିଲେ, 'ହଁ, ମୋର ।'

ମୋ ମନରୁ ବିସ୍ମୟ କଟିଲାନି । ମୁଁ ଜାଣିବାରେ ଆଇ.ଏ.ଏସ୍.ମାନଙ୍କ ଭିତରୁ କେହି କେହି କବିତା ଲେଖନ୍ତି, ଗଳ୍ପ ଲେଖନ୍ତି, ନାଟକ ଲେଖନ୍ତି, ପ୍ରବନ୍ଧ ଲେଖନ୍ତି । ହେଲେ ଛବି ? ଛବି ଆଙ୍କୁଥିବା ଆଇ.ଏ.ଏସ୍. ଅଫିସର୍ କାହିଁ କେବେ ତ ଦେଖିନି !

ବିଦେଶୀ ପର୍ଯ୍ୟଟକମାନେ କୋରାପୁଟର ଆଦିବାସୀମାନଙ୍କୁ ଯେମିତି ଦେଖନ୍ତି, ସେଇ ଦୃଷ୍ଟିନେଇ ତାଙ୍କୁ ଅନେଇ ରହିଲି ।

ଅସୀମ୍ ବସୁଙ୍କ ଅଙ୍କିତ ସ୍କେଚ୍, ୧୯୭୩





ପୋଷ୍ଟର ୧୯୭୧

ଆମ ଅନୁଷ୍ଠାନ 'ଶିଳ୍ପୀ ସଂସଦ' ଜରିଆରେ ଜେ.ପି. ଦାସଙ୍କ ଚିତ୍ର ପ୍ରଦର୍ଶନୀ ହେବା ସ୍ଥିର ହେଲା । ଅସିତ୍ (ଶିଳ୍ପୀ ଅସିତ୍ ମୁଖାର୍ଜୀ) ଓ ମୁଁ ଜେ.ପି.ଙ୍କ ଘରକୁ ଯାଇ ପ୍ରଦର୍ଶନୀ ପାଇଁ ଛବି ବାଛିଲୁ, ପ୍ରଦର୍ଶନୀ ହେଲା ।'

୧୯୭୧ରେ ଭୁବନେଶ୍ୱରରେ କୌଣସି ଶିଳ୍ପୀଙ୍କ ଚିତ୍ର ପ୍ରଦର୍ଶନୀ ଅନୁଷ୍ଠିତ ହେବା ଥିଲା ଗୋଟାଏ ବଡ଼ ଘଟଣା । ସେ ସମୟର ସମ୍ବାଦପତ୍ରମାନଙ୍କରେ ଏହାର ଉଲ୍ଲେଖ ହୋଇଥିଲା । ଦୈନିକ 'ପ୍ରଜାତନ୍ତ୍ର' (୯ ମାର୍ଚ୍ଚ, ୧୯୭୧)ରେ ପ୍ରକାଶିତ ସମ୍ବାଦଟି ଥିଲା ଏହିପରି :

**'ପୂର୍ତ୍ତବିଭାଗ ସେକ୍ରେଟାରୀ ଶ୍ରୀ ଜଗନ୍ନାଥ ପ୍ରସାଦ ଦାସଙ୍କ ଏକକ ଚିତ୍ର ପ୍ରଦର୍ଶନୀ ।** ଭୁବନେଶ୍ୱର, ୮ । ୩ – ରାଜ୍ୟର ଜଣେ କୃତୀ ଆଇ.ଏ.ଏସ୍. ଅଫିସର ତଥା ସାଂପ୍ରତିକ ପୂର୍ତ୍ତବିଭାଗ ସେକ୍ରେଟାରୀ ଶ୍ରୀ ଜଗନ୍ନାଥ ପ୍ରସାଦ ଦାସ ଜଣେ ସୌଖୀନ କଳାକାର ଓ ଶିଳ୍ପୀଭାବେ ମଧ୍ୟ ପ୍ରତିଷ୍ଠିତ ହୋଇପାରିଛନ୍ତି । ଏହା ଗତକାଲି ତାଙ୍କର ଏକକ ଚିତ୍ର ପ୍ରଦର୍ଶନୀରେ ସ୍ପଷ୍ଟ ହୋଇଯାଇଛି ।

ଗତକାଲି ରବୀନ୍ଦ୍ରମଣ୍ଡପଠାରେ ଶ୍ରୀ ଦାସଙ୍କର ଏହି ଏକକ ଚିତ୍ର ପ୍ରଦର୍ଶନୀରେ ବିଶିଷ୍ଟ ଅତିଥିଭାବେ ବିହାରର ପୂର୍ବତନ ରାଜ୍ୟପାଳ ଶ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ ଯୋଗ ଦେଇଥିଲେ ଏବଂ ଅନ୍ୟାନ୍ୟ ବହୁ ବିଶିଷ୍ଟ ଉଚ୍ଚପଦସ୍ଥ ଅଫିସର ଓ ସାଧାରଣ ଲୋକ ଉପସ୍ଥିତ ଥିଲେ ।

ଗୋଷ୍ଠୀ ପ୍ରଦର୍ଶନୀର ନିମନ୍ତ୍ରଣ ପତ୍ର ୧୯୭୩




ଆଇ.ଏ.ଏସ୍. ଅଫିସର ଶ୍ରୀ ଜେ.ପି. ଦାସ ଜଣେ ଚିତ୍ରଶିଳ୍ପୀ ମଧ୍ୟ – ଏ ଧାରଣା କାହାର ବି ନ ଥିଲା; କିନ୍ତୁ ତାଙ୍କର ଚିତ୍ର ପ୍ରଦର୍ଶନୀ ଦେଖିଲା ପରେ ସେ ଯେ ଜଣେ କୃତୀଶିଳ୍ପୀ, ଏହା ପ୍ରତ୍ୟେକେ ସ୍ୱୀକାର କରିବେ ।

ଶ୍ରୀ କାନୁନ୍‌ଗୋ କାଲି ଏହି ପ୍ରଦର୍ଶନୀ ଦେଖିବା ପରେ ମନ୍ତବ୍ୟ ଦେଇଥିଲେ; ପ୍ରଶାସନିକ ଅଫିସରମାନଙ୍କ ଭିତରେ କଳା, ସାହିତ୍ୟ ଆଦି ପ୍ରତି ଆଗ୍ରହ ସୃଷ୍ଟି ହେବା ଆବଶ୍ୟକ ।

ଶ୍ରୀ ଦାସଙ୍କର ଚିତ୍ରରେ ପରିସ୍ଫୁଟ ଗତିଶୀଳତାର ସେ ଭୂୟସୀ ପ୍ରଶଂସା କରିଥିଲେ । ଅନ୍ୟାନ୍ୟ ବହୁଶିଳ୍ପୀ ତାଙ୍କର ଚିତ୍ର ପ୍ରଦର୍ଶନୀ କରାଇଛନ୍ତି; କିନ୍ତୁ ଆଧୁନିକ କବିତା ପରି ଆଧୁନିକ ଚିତ୍ରଶିଳ୍ପ ଯେଉଁଳି ଅବୋଧ ହୋଇଥାଏ, ଶ୍ରୀ ଦାସଙ୍କର ଚିତ୍ରଗୁଡ଼ିକ ସେହି ତଥାକଥିତ ଅବୋଧ ପରିବେଶରୁ ବେଶ୍ ମୁକ୍ତ ରହିଛି ।

ଗତକାଲି ଏହି ଚିତ୍ର ପ୍ରଦର୍ଶନ 'ଶିଳ୍ପୀ ସଂସଦ'ର ଆନୁକୂଲ୍ୟରେ ଅନୁଷ୍ଠିତ ହୋଇଥିଲା । ଶିଳ୍ପୀ ସଂସଦର ବହୁମୁଖୀ କାର୍ଯ୍ୟକ୍ରମ ଭିତରେ ଏହିଭଳି ଚିତ୍ର ପ୍ରଦର୍ଶନୀ ଗୋଟିଏ ।'

ଲକ୍ଷ୍ୟ କରନ୍ତୁ, ଏ ସମ୍ବାଦରେ ଜଗନ୍ନାଥ ପ୍ରସାଦଙ୍କୁ ଜଣେ ପ୍ରଶାସକ ଓ ଚିତ୍ରଶିଳ୍ପୀଭାବରେ ଚିହ୍ନିତ କରାଯାଇଛି; ତାଙ୍କର ସାହିତ୍ୟ କୃତି ସଂପର୍କରେ ଉଲ୍ଲେଖ କରାଯାଇ ନାହିଁ । ଏଥିରେ ଆଶ୍ଚର୍ଯ୍ୟକର କିଛି ନାହିଁ । କାରଣ ତାଙ୍କର 'ପ୍ରଥମ ପୁରୁଷ' କବିତା ଗ୍ରନ୍ଥ ମଧ୍ୟ ସେତେବେଳକୁ ପ୍ରକାଶିତ ହୋଇ ନ ଥାଏ; ଏହା ପ୍ରକାଶିତ ହେଲା ଡିସେମ୍ବର, ୧୯୭୧ରେ ('ସ୍ତବକ' କ୍ଷୁଦ୍ର କବିତା ଗ୍ରନ୍ଥଟି ୧୯୫୧ରେ ପ୍ରକାଶିତ ହୋଇଥିଲେ ମଧ୍ୟ ବୃହତ୍ତର ପାଠକଗୋଷ୍ଠୀ ନିକଟରେ ପହଞ୍ଚି ପାରି ନ ଥିଲା ।)


ନିତ୍ୟାନନ୍ଦ କାନୁନ୍‌ଗୋଙ୍କ ସହ ୧୯୭୧

ଜଗନ୍ନାଥ ପ୍ରସାଦଙ୍କ ଚିତ୍ର ସଂପର୍କରେ ବିଶିଷ୍ଟ ଚିତ୍ରଶିଳ୍ପୀ, ଲେଖକ, କେନ୍ଦ୍ର ଲଳିତ କଳା ଏକାଡେମୀର ପୂର୍ବତନ ସଂପାଦକ ତଥା ଓଡ଼ିଶା ଲଳିତ କଳା ଏକାଡେମୀର ପୂର୍ବତନ ସଭାପତି ଦିନନାଥ ପାଠୀଙ୍କ ମନ୍ତବ୍ୟ ପ୍ରଣିଧାନଯୋଗ୍ୟ :

'ଜଗନ୍ନାଥ ପ୍ରସାଦ ଦାସ ତାଙ୍କର ସୃଜନ ପ୍ରକ୍ରିୟା ଆରମ୍ଭ କରିଥିଲେ କବିତାରୁ । ଅଳ୍ପ କେତେକ ବର୍ଷ ପାଇଁ ସେ ଫେରିଲେ ପେଣ୍ଟିଂକୁ । ରଙ୍ଗ ଓ ତୂଳୀ ସେ ବ୍ୟବହାର କରିପାରିଲେ ଗଭୀର ଆନ୍ତରିକତା ସହ । ଭୁବନେଶ୍ବରରେ ପ୍ରଦର୍ଶିତ ତାଙ୍କର ଷୋହଳଟି ଚିତ୍ର ଯଥାର୍ଥରେ ଥିଲା ସତେଜ ଏବଂ ତାଙ୍କ ସ୍ବକୀୟ ଅନୁଭବର ପ୍ରକାଶ ।

ତାଙ୍କ ଚିତ୍ରଗୁଡ଼ିକ ଲକ୍ଷ୍ୟ କଲେ ମନେହୁଏ – ସେ ଯେପରି ତାଙ୍କର ମାନସିକତା ଓ ଶୈଳୀ ପ୍ରକାଶ କରିବା ପାଇଁ ଉଦ୍ୟମ କରିଛନ୍ତି ।'

ଭୁବନେଶ୍ବରରେ ପ୍ରଦର୍ଶିତ ଚିତ୍ରଗୁଡ଼ିକର ସଂଖ୍ୟା ବା ନାମ ନ ଥିଲା । କିନ୍ତୁ କେତେକ ଚିତ୍ରର ପରିଚୟ ସୂଚିତ ହୋଇଥିଲା । 'ବ୍ଲାକ୍ ଗାର୍ଲ' (କଳାଝିଅ) ତାଙ୍କର ସଫଳତମ ଚିତ୍ର ମଧ୍ୟରେ ଅନ୍ୟତମ । ତାଙ୍କର ସମସ୍ତ ଚିତ୍ର ସଫଳ ବୋଲି କୁହାଯାଇ ପାରିବ ନାହିଁ । କିନ୍ତୁ ଅଳ୍ପ କେତୋଟି ଚିତ୍ର ପାଇଁ ଜଣେ ସଚ୍ଚା ଶିଳ୍ପୀ ଭାବରେ ସେ ଅବଶ୍ୟ ପରିଗଣିତ ହେବେ ।' (ଇଣ୍ଡିଆନ୍ ଏକ୍ସପ୍ରେସ୍, ମାର୍ଚ୍ଚ-୧୯୭୧)

ନିଜର ଚିତ୍ରକଳା ସଂପର୍କରେ ଜଗନ୍ନାଥ ପ୍ରସାଦ ବିଶେଷ କିଛି କହନ୍ତି ନାହିଁ; ସେ ସଂପର୍କରେ ଆଲୋଚନା କରିବାରେ ଆପାତତଃ ଆଗ୍ରହୀ ନୁହନ୍ତି । 'ଆଉ ତ ଚିତ୍ର ଆଙ୍କୁ ନାହିଁ, ସେ ବିଷୟରେ ଆଲୋଚନା କାହିଁକି ?' – ଏହିପରି ଭାବନାଟିଏ ହୁଏତ ତାଙ୍କୁ ଆବୋରି ରଖିଛି । ତେବେ ଅଭୟ ସିଂହଙ୍କୁ ସେ ଦେଇଥିବା ଏକ ସାକ୍ଷାତକାରରେ ନିଜର ଚିତ୍ରକଳା ସଂପର୍କରେ କେତେକ ମୂଲ୍ୟବାନ୍ ଟିପ୍ପଣୀ ଦେଇଛନ୍ତି :



ମୃଣାଳ ସେନଙ୍କ ସହିତ, କଲିକତା ୨୦୦୦

'... ଏକାଧିକ ସୃଜନକ୍ରିୟା ଅଭ୍ୟାସ କରୁଥିବା ଶିଳ୍ପୀ ପକ୍ଷରେ ଏକଥା କହିବା କଷ୍ଟକର ଯେ ସେ କୌଣସି ଏକ ନିର୍ଦ୍ଦିଷ୍ଟ ମାଧ୍ୟମ ଦେଇ ନିଜକୁ ପ୍ରକାଶ କରିବାକୁ ସହଜ ମନେକରେ । ଯଦିଓ ମୋର ପ୍ରଥମ ଚିତ୍ରକଳା ପ୍ରଦର୍ଶନୀ ମୋର ପ୍ରଥମ କବିତା ବହିର ପ୍ରକାଶ ପୂର୍ବରୁ ଅନୁଷ୍ଠିତ ହୋଇଥିଲା, ସମୟ ଅଭାବରୁ ମୁଁ ବର୍ତ୍ତମାନ ଚିତ୍ରକଳା କରିପାରୁ ନାହିଁ । ବର୍ତ୍ତମାନ କେବଳ କବିତା (ଏବଂ ନାଟକ) ମୋର ସୃଜନାତ୍ମକ ପ୍ରକାଶର ମାଧ୍ୟମ ହୋଇଥିବାରୁ ମୁଁ ଅନେକ ସମୟରେ ନିଜକୁ ଚିତ୍ରଶିଳ୍ପୀ ଭାବରେ ପରିଚୟ ଦେବାକୁ କୁଣ୍ଠିତ ମନେକରୁଛି ଏବଂ ଅନ୍ୟତ୍ର ଏକଥା ମଧ୍ୟ କହିଛି ଯେ କବିତା ମୋର ପ୍ରଥମ ପ୍ରେମ ।

'... ପ୍ରତ୍ୟେକ କଳାର ଏକ ନିର୍ଦ୍ଦିଷ୍ଟ ପରିପ୍ରକାଶର ଭଙ୍ଗୀ ଅଛି । ଚିତ୍ରାଙ୍କନ ପାଇଁ କାନ୍‌ଭାସ୍ ଓ ରଙ୍ଗ ଯାହା, କବିତା ପାଇଁ ଶବ୍ଦ ଠିକ୍ ତାହା । ରଙ୍ଗବିନ୍ୟାସ ଯଦି ଚିତ୍ରକଳାର ସଂଜ୍ଞା ହୁଏ, ଶବ୍ଦର ବିନ୍ୟାସ କବିତାର ସଂଜ୍ଞା ହେବ । ଉଭୟରେ ଶୈଳୀର ଆଶ୍ରୟ ନେବାକୁ ହୋଇଥାଏ । କଳାତ୍ମକ ମୂଲ୍ୟବୋଧଦୃଷ୍ଟିରୁ ଏ ଦୁଇଟି ମଧ୍ୟରୁ କୌଣସି ଗୋଟିକକୁ ଅଧିକ ସ୍ପଷ୍ଟ ବୋଲି କହିବା ସମ୍ଭବ ନୁହେଁ । ଯଦି ସ୍ପଷ୍ଟତାର ଅଭାବ ଲକ୍ଷିତ ହୁଏ, ତା' କବି ବା ଚିତ୍ରଶିଳ୍ପୀର ଦୁର୍ବଳତା ବୋଲି ଧରିନେବାକୁ ହେବ । ଏ କଥା ଅବଶ୍ୟ ସତ୍ୟ ଯେ ବିଭିନ୍ନ କାରଣରୁ (ଯଥା, ପ୍ରସାରର ସମ୍ଭାବନା) ବର୍ତ୍ତମାନ ସମୟରେ କବିତା ଏକ ଅଧିକ ସକ୍ରିୟ ମାଧ୍ୟମ । ଯେପରି କି କବିତାଠାରୁ ନାଟକ ବା ଉପନ୍ୟାସ ଆହୁରି ଅଧିକ ସକ୍ରିୟ ମାଧ୍ୟମ ।

'... ଚିତ୍ରକଳା ପ୍ରତି ମୋର ଆକର୍ଷଣ ବହୁଦିନର । ତେବେ ଏତିକି କହିପାରେ ଯେ ୧୯୫୬-୫୭ରେ ମୁଁ ଆଲାହାବାଦ ବିଶ୍ୱବିଦ୍ୟାଳୟରେ କିଛିଦିନ ପାଇଁ ଚିତ୍ରକଳା ଡିପ୍ଲୋମା କ୍ଲାସ୍‌ର ଛାତ୍ର ଥିଲି । ସମାଜକୁ ପରିବର୍ତ୍ତନ କରିବାରେ ସାହିତ୍ୟ ଅଥବା ଚିତ୍ରକଳାର ଭୂମିକା ଅତି ସୀମିତ । କୌଣସି କଳା ଯଦି ମଣିଷକୁ ସାମୟିକଭାବରେ ବା ବିଳମ୍ବରେ ପ୍ରଭାବିତ କରିପାରେ ଏବଂ ଚିନ୍ତା କରିବାକୁ ବାଧ୍ୟ କରେ, ମୁଁ ତାକୁ ସଫଳ କଳାତ୍ମକ ସୃଷ୍ଟି ବୋଲି କହିବି ଏବଂ କଳାର ସଂଜ୍ଞା ହେଉଛି ମଣିଷ ଓ ସମାଜର ରୂପର (ଉଭୟ ଭିତର ଓ ବାହାରର ) ପ୍ରକାଶ ।' (ସମାବେଶ, ୧୯୮୦)

ଜଗନ୍ନାଥ ପ୍ରସାଦ ଆଉ ଚିତ୍ର ଆଙ୍କନ୍ତୁ ବା ନ ଆଙ୍କନ୍ତୁ, ତାଙ୍କ 'କଳାଝିଅ'କୁ ହୁଏତ ତଥାପି ପାଶୋରି ନ ଥିବେ ମୃଣାଳ ସେନ୍ । ଯେଉଁମାନେ ଜଗନ୍ନାଥ ପ୍ରସାଦଙ୍କ ଚିତ୍ର ପ୍ରତ୍ୟକ୍ଷ କରିଛନ୍ତି, ସେମାନେ ତାଙ୍କ ଚିତ୍ରକଳା ପ୍ରତିଭାକୁ ସ୍ୱୀକାର କରନ୍ତି ନିଶ୍ଚୟ ।

---

# ପୁରୀ ପେଣ୍ଟିଙ୍ଗସ୍

୧୯୮୨ରେ ପ୍ରକାଶିତ ହେଲା ଜଗନ୍ନାଥ ପ୍ରସାଦଙ୍କର 'ପୁରୀ ପେଣ୍ଟିଙ୍ଗସ୍ : ଦ ଚିତ୍ରକାର ଆଣ୍ଡ ହିଜ୍ ୱାର୍କ୍' । ପୁରୀର ପାରଂପରିକ ଚିତ୍ରକଳା – ମୁଖ୍ୟତଃ ପଟଚିତ୍ର ସଂପର୍କରେ – କ୍ରାଉନ ସାଇଜ୍‌ର ଇଂରାଜୀରେ ଲିଖିତ ପ୍ରାୟ ଦୁଇଶହ ପୃଷ୍ଠାର ଗବେଷଣାମୂଳକ ଗ୍ରନ୍ଥ । ଗ୍ରନ୍ଥଟି ଏକସଙ୍ଗେ ପ୍ରକାଶିତ ହେଲା ହ୍ୟୁମାନିଟିଜ୍ ପ୍ରେସ୍ (ଆମେରିକା) ଏବଂ ଆର୍‌ନଲ୍‌ଡ୍ ହାଇନେମ୍ୟାନ୍ (ଭାରତ) ଦ୍ୱାରା ।

ଜଣେ ଚିତ୍ରଶିଳ୍ପୀ ଭାବରେ ଜଗନ୍ନାଥ ପ୍ରସାଦ ଅବଶ୍ୟ ସେତେବେଳକୁ ପରିଚିତ ହୋଇସାରିଥିଲେ – ୧୯୭୧ରେ ଭୁବନେଶ୍ୱରରେ ତାଙ୍କର ଏକକ ଚିତ୍ର ପ୍ରଦର୍ଶନୀ ଅନୁଷ୍ଠିତ ହୋଇସାରିଥିଲା । ଯେଉଁମାନେ ଚିତ୍ରଶିଳ୍ପୀ, ସେମାନେ ଚିତ୍ରକଳାର ଅଧ୍ୟୟନ ବା ଗବେଷଣାରେ ଆଗ୍ରହୀ ହେବାରେ କୌଣସି ଅସ୍ୱାଭାବିକତା ନାହିଁ । କିନ୍ତୁ ଜଗନ୍ନାଥ ପ୍ରସାଦ ଯେ ଚିତ୍ରକଳା ସମ୍ପର୍କରେ କଠିନ ଗବେଷଣା କରି ଏପରି ଉଚ୍ଚମାନର ଗ୍ରନ୍ଥଟିଏ ପ୍ରକାଶ କରିବାକୁ ଯାଉଛନ୍ତି, ଏହା ଅନେକଙ୍କ ପାଇଁ ଆଶ୍ଚର୍ଯ୍ୟକର ଥିଲା ନିଶ୍ଚୟ । ଏହି ଗ୍ରନ୍ଥ ପ୍ରକାଶନ ଫଳରେ ରାତାରାତି ଜଗନ୍ନାଥ ପ୍ରସାଦଙ୍କ ଖ୍ୟାତି ବ୍ୟାପିଗଲା ଜଣେ ପ୍ରମୁଖ କଳା ସମାଲୋଚକ ଭାବରେ । ଭାରତର ବିଭିନ୍ନ ଇଂରାଜୀ ସମ୍ବାଦପତ୍ର – ଯେପରି ଟାଇମ୍‌ସ୍ ଅଫ୍ ଇଣ୍ଡିଆ, ଇକନମିକ୍ ଟାଇମ୍‌ସ୍, ଟେଲିଗ୍ରାଫ୍, ହିନ୍ଦୁ, ହିନ୍ଦୁସ୍ତାନ୍ ଟାଇମ୍‌ସ୍ ପ୍ରଭୃତିରେ ଗ୍ରନ୍ଥଟିର ରିଭ୍ୟୁ ପ୍ରକାଶିତ ହେଲା; ବିଦେଶୀ କଳା ସମାଲୋଚକମାନେ ମଧ୍ୟ ଗ୍ରନ୍ଥଟିର ବିସ୍ତୃତ ମୂଲ୍ୟାୟନ କଲେ ।

ଯେଉଁ ପରିସ୍ଥିତିରେ କବି, ଚିତ୍ରଶିଳ୍ପୀ, ନାଟ୍ୟକାର ଜଗନ୍ନାଥ ପ୍ରସାଦ କଳା ସମାଲୋଚନାରେ ଆଗ୍ରହୀ ହେଲେ, ସେଥିରେ ହୁଏତ କିଛିଟା ଆକସ୍ମିକତା ଥିଲା ।

ଓଡ଼ିଶା ସରକାରଙ୍କ ଶିଳ୍ପ ବିଭାଗରେ ଡେପୁଟି ସେକ୍ରେଟାରୀ ଓ ଡିରେକ୍ଟର ଥିବା ସମୟରେ ଜଗନ୍ନାଥ ପ୍ରସାଦ ଓଡ଼ିଶାର ହସ୍ତଶିଳ୍ପ କାରିଗରମାନଙ୍କ କାର୍ଯ୍ୟର ଅନୁଧ୍ୟାନ କରିଥିଲେ । ଷଷ୍ଠ ଦଶକର ଶେଷ ଭାଗରେ ସେ ପଟଚିତ୍ର ସଂପର୍କରେ ଆଗ୍ରହୀ ହେଲେ । ସେ ନିଜେ ତ ଚିତ୍ର କରୁଥିଲେ; ପାରଂପରିକ ଚିତ୍ର ପ୍ରତି ତାଙ୍କର ଆକର୍ଷଣ ବଢ଼ିଲା । ପ୍ରଫେସର ଦେବୀ ପ୍ରସନ୍ନ ପଟ୍ଟନାୟକ ଏହି ସମୟରେ ତାଙ୍କୁ ପ୍ରସ୍ତାବ ଦେଲେ – ଜଗନ୍ନାଥ ପ୍ରସାଦ ହୋମି ଭାବା ଫେଲୋସିପ୍ ନେଇ ତାଙ୍କର ଗବେଷଣା ଜାରି ରଖନ୍ତୁ । ଜଗନ୍ନାଥ ପ୍ରସାଦ ନିଜେ ଫେଲୋସିପ୍ ପାଇଁ ଦରଖାସ୍ତ ଦେବେ କି ନ ଦେବେ ସ୍ଥିର କରିପାରିଲେ ନାହିଁ । ପ୍ରଫେସର ପଟ୍ଟନାୟକ ଫେଲୋସିପ୍‌ସ୍ କାଉନ୍‌ସିଲ୍‌ର ସଭ୍ୟ ଡକ୍‌ଟର୍ ନାରାୟଣ ମେନନ୍‌ଙ୍କୁ ପତ୍ର ଲେଖିଲେ । କାଉନ୍‌ସିଲ୍ ଜଗନ୍ନାଥ ପ୍ରସାଦଙ୍କୁ ବମ୍ବେ ନିମନ୍ତ୍ରଣ କରି ତାଙ୍କ ସହିତ ଆଲୋଚନା କଲେ । ବିଶିଷ୍ଟ

କଳା ସମାଲୋଚକ ପ୍ରଫେସର ନିହାର ରଂଜନ ରାୟ ସେହି ଆଲୋଚନାରେ ଉପସ୍ଥିତ ଥିଲେ । ଜଗନ୍ନାଥ ପ୍ରସାଦଙ୍କୁ ପଟଚିତ୍ର ସଂପର୍କରେ ଗବେଷଣା କରିବା ପାଇଁ ସେ ଉତ୍ସାହିତ କଲେ । ୧୯୭୯ରେ ତାଙ୍କୁ ହୋମିଭାବା ଫେଲୋସିପ୍ ପ୍ରଦାନ କରାଗଲା । ଏହି ଫେଲୋସିପ୍ ଗ୍ରହଣ କରିବା ଦ୍ୱାରା ଆର୍ଥିକ ଦୃଷ୍ଟିରୁ ସେ କେତେକ ପରିମାଣରେ ଅବଶ୍ୟ କ୍ଷତିଗ୍ରସ୍ତ ହୋଇଥିଲେ ।

ଚିତ୍ରକାର ଜଗନ୍ନାଥ ମହାପାତ୍ରଙ୍କ ସହିତ,
ରଘୁରାଜପୁର ୧୯୮୦



୧୯୭୯-୮୦ ମଧ୍ୟରେ ଜଗନ୍ନାଥ ପ୍ରସାଦ ପ୍ରାୟ ଆଠ ମାସ ପୁରୀ ଓ ପଟଚିତ୍ର ଶିଳ୍ପୀମାନଙ୍କ ଗ୍ରାମ ରଘୁରାଜପୁରରେ କଟାଇ ଥିଲେ । ବନାରସ, ଲଣ୍ଡନ୍ ଓ ଅହମଦାବାଦର ବିଭିନ୍ନ ମ୍ୟୁଜିୟମ୍‌ରୁ ତଥ୍ୟ ସଂଗ୍ରହ କରିଥିଲେ । ଆମେରିକାର କାଲିଫର୍ଣ୍ଣିଆ ବିଶ୍ୱବିଦ୍ୟାଳୟର କଳା ଇତିହାସ ବିଭାଗର ପ୍ରଫେସର ଜୋଆନା ୱିଲିୟମ୍‌ସ୍‌ଙ୍କ ସହିତ ବିଶଦ ଆଲୋଚନା କରିଥିଲେ । ନିଜେ ଜୋଆନା ସେ ସମୟରେ ଓଡ଼ିଶାର ତାଳପତ୍ର ପୋଥି ଚିତ୍ର ବିଷୟରେ ଗବେଷଣା କରିବାର ଯୋଜନା କରୁଥିଲେ । ଏଠାରେ ଉଲ୍ଲେଖ କରାଯାଇପାରେ, ଜଗନ୍ନାଥ ପ୍ରସାଦ ତାଙ୍କର ପୁରୀ ପେଣ୍ଟିଙ୍ଗସ୍ ଗ୍ରନ୍ଥଟିକୁ ଜୋଆନା ୱିଲିୟମ୍‌ସ୍‌ଙ୍କୁ ଉତ୍ସର୍ଗ କରିଛନ୍ତି ।


ଜୋଆନା ୱଇଲିୟମ୍‌ସ୍‌ଙ୍କ ସହ

ନିଜ ଗବେଷଣା ସଂପର୍କରେ ଜଗନ୍ନାଥ ପ୍ରସାଦ ଏକ ସାକ୍ଷାତ୍‌କାରରେ ଯାହା କହିଥିଲେ, ତାହା ଏହିପରି :

'... ଅନେକ ବର୍ଷ ତଳେ କଳା ସମାଲୋଚକ ଓ.ସି. ଗାଙ୍ଗୁଲି ଏକ ମନ୍ତବ୍ୟ କରିଥିଲେ ଯେ ଓଡ଼ିଶାର ଶିଳ୍ପକଳା ସମ୍ବନ୍ଧରେ ଯଦିଓ ବିଶଦ ଭାବରେ ଆଲୋଚନା କରାଯାଇଛି, ଓଡ଼ିଶାର ଚିତ୍ରକଳା ସଂପର୍କରେ କୌଣସି ଅଧ୍ୟୟନ କରାଯାଇ ନାହିଁ । ସେହି ସମୟରୁ ମୁଁ ଓଡ଼ିଶାର ଚିତ୍ରକଳା ସମ୍ପର୍କରେ ଅଧ୍ୟୟନ କରିବା ପାଇଁ ମନସ୍ଥ କରିଥିଲି ।

ଓଡ଼ିଶାର ପଟଚିତ୍ର ଏକ ଜୀବନ୍ତ କଳା । ମୋର ଗବେଷଣା ଉଭୟ ପଟଚିତ୍ରକାରମାନଙ୍କର ସାମାଜିକ ଅଧ୍ୟୟନ ତଥା ପଟଚିତ୍ର ଶୈଳୀର କଳାତ୍ମକ ଐତିହାସିକ ଅଧ୍ୟୟନ । ଓଡ଼ିଶାରେ ପଟଚିତ୍ରରେ ଅନେକ କୃତୀଶିଳ୍ପୀ ଅଛନ୍ତି ଏବଂ ସେମାନଙ୍କ ମଧ୍ୟରୁ ଅଧିକାଂଶଙ୍କୁ ଜାତୀୟ ସମ୍ମାନରେ ସମ୍ମାନିତ କରାଯାଇଛି ।'

(ସମାବେଶ, ୧୯୮୦)

ବରିଷ୍ଠ ଚିତ୍ରଶିଳ୍ପୀ, କଳା ସମାଲୋଚକ ତଥା ଲେଖକ ଦିନନାଥ ପାଠୀ ଜଗନ୍ନାଥ ପ୍ରସାଦଙ୍କ ଚିତ୍ରକଳା ତଥା କଳା ସମାଲୋଚନା ସଂପର୍କରେ ବିଭିନ୍ନ ଅବସରରେ ମୂଲ୍ୟବାନ ଟିପ୍ପଣୀ ପ୍ରଦାନ କରିଛନ୍ତି । ଦିନନାଥ ମୋର ସମବୟସ୍କ ଓ ଅନ୍ୟତମ ଅନ୍ତରଙ୍ଗ ବନ୍ଧୁ । ଥରେ ସେ ମୋତେ ବିଶ୍ୱାସକୁ ନେଇ 'ପୁରୀ ପେଣ୍ଟିଙ୍ଗସ୍' ସଂପର୍କରେ କହିଥିଲେ – ଓଡ଼ିଶା ପ୍ରତି ଜଗନ୍ନାଥ ପ୍ରସାଦଙ୍କର ସବୁଠାରୁ ମହାର୍ଘ ଅବଦାନ ପୁରୀ ପେଣ୍ଟିଙ୍ଗସ୍ ଗ୍ରନ୍ଥଟି ।

ଦିନନାଥଙ୍କ ସହିତ ଏଥିରେ ଅନେକେ ଏକମତ ହେବେ ନାହିଁ । ଜଗନ୍ନାଥ ପ୍ରସାଦଙ୍କ କବିତା, ଗଳ୍ପ, ଉପନ୍ୟାସ ତଥା ଓଡ଼ିଆ ସାହିତ୍ୟକୁ ତାଙ୍କର ବିପୁଳ ଅବଦାନକୁ ସ୍ମରଣ କରି ଅନେକେ କହିବେ – ଦିନନାଥ ମୂଳତଃ ଜଣେ କଳା ସମାଲୋଚକ ଓ ଚିତ୍ରଶିଳ୍ପୀ ହୋଇଥିବାରୁ 'ପୁରୀ ପେଣ୍ଟିଙ୍ଗ୍ସ୍' ସପକ୍ଷରେ ଏଭଳି ଯୁକ୍ତି କରିଛନ୍ତି । କେହି ତାଙ୍କ ସହିତ ଏକମତ ହୁଅନ୍ତୁ ବା ନ ହୁଅନ୍ତୁ, ଓଡ଼ିଶାର କଳା ସମାଲୋଚନା କ୍ଷେତ୍ରରେ 'ପୁରୀ ପେଣ୍ଟିଙ୍ଗ୍ସ୍' ଏକ ଦିଗବାରେଣୀ, ଏହା ଯେ କେହି ସ୍ୱୀକାର କରିବେ । ଓଡ଼ିଶାର ପାରଂପରିକ ଚିତ୍ରକଳାର କୌଣସି ଗବେଷକ ଏ ଗ୍ରନ୍ଥଟିକୁ ଏଡ଼ାଇ ଯାଇ ପାରିବେ ନାହିଁ । କଳା ସମାଲୋଚନା କ୍ଷେତ୍ରରେ ଏହା ଏକ ସାର୍ବକାଳିକ କୃତି ବା କ୍ଲାସିକ୍ ।

ସପ୍ତମ ଦଶକର ଶେଷ ଭାଗ ତଥା ଅଷ୍ଟମ ଦଶକର ପ୍ରଥମ ଭାଗରେ ବେଶ୍ କେତେଜଣ କଳା ସମାଲୋଚକ ଓଡ଼ିଶାର ସ୍ଥାପତ୍ୟ, ଭାସ୍କର୍ଯ୍ୟ ତଥା ଚିତ୍ରକଳା ସଂପର୍କରେ ଗବେଷଣା କରିବା ପାଇଁ ଆଗ୍ରହୀ ହୋଇଥିଲେ । ସେମାନଙ୍କ ମଧ୍ୟରେ ଏବରହାର୍ଡ୍ ଫିସର୍ (ସୁଇଜରଲ୍ୟାଣ୍ଡ), ହର୍‌ମାନ୍ କୁଲ୍‌କେ (ଜର୍ମାନୀ), ଜୋଆନା ୱିଲିୟମ୍‌ସ୍ (ଆମେରିକା), ଥୋମାସ୍ ଇ ଡୋନାଲ୍‌ଡ୍‌ସନ୍ (ଆମେରିକା), ହେନେରିକ୍ ଉନ୍ ଷ୍ଟିଟ୍ରେନ୍‌କ୍ରନ୍ (ଆମେରିକା) ଓ କପିଳା ବାତ୍ସାୟନଙ୍କ ନାମ ଉଲ୍ଲେଖଯୋଗ୍ୟ । ଏ ପ୍ରସଙ୍ଗରେ ସୀତାକାନ୍ତ ମହାପାତ୍ର, କରୁଣା ସାଗର ବେହେରା, ବେଟିନା ବାଓମର୍, ରାଜେନ୍ଦ୍ର ପ୍ରସାଦ ଦାସ, ସୁବାସ ପାଣି ପ୍ରମୁଖଙ୍କ ନାମ ମଧ୍ୟ ସ୍ମରଣୀୟ । ତେବେ ଓଡ଼ିଶାର ମନ୍ଦିର-ସ୍ଥାପତ୍ୟ-ଚିତ୍ରକଳା ସମାଲୋଚନାରେ ଦିନନାଥ ପାଠୀଙ୍କ ନାମ ଅଗ୍ରସ୍ଥାନୀୟ । ଏଠାରେ ଯେଉଁମାନଙ୍କ ନାମ ଉଲ୍ଲେଖ କରାଗଲା, ୧୯୮୨ରେ ଜଗନ୍ନାଥ ପ୍ରସାଦ ଦାସଙ୍କ 'ପୁରୀ ପେଣ୍ଟିଙ୍ଗ୍ସ୍' ପ୍ରକାଶିତ ହେବା ସମୟକୁ ସେମାନଙ୍କ ମଧ୍ୟରୁ ପ୍ରାୟ କାହାରି ଓଡ଼ିଶାର ଚିତ୍ରକଳା ସଂପର୍କରେ ପୂର୍ଣ୍ଣାଙ୍ଗ ଗ୍ରନ୍ଥ ବା ସନ୍ଦର୍ଭ ପ୍ରକାଶିତ ହୋଇ ନ ଥିଲା । ତେବେ ଦିନନାଥ ପାଠୀଙ୍କ 'ମ୍ୟୁରାଲ୍ ପେଣ୍ଟିଙ୍ଗ୍ସ୍ ଇନ୍ ଓଡ଼ିଶା' ୧୯୮୧ରେ ଓଡ଼ିଶା ଲଳିତକଳା ଏକାଡେମୀ ଦ୍ୱାରା ଏବଂ ସୁବାସ ପାଣିଙ୍କ 'ଇଲଷ୍ଟ୍ରେଟେଡ୍ ପାମ୍‌ଲିଫ୍ ମ୍ୟାନୁସ୍କ୍ରିପ୍‌ଟ୍ସ୍ ଅଫ୍ ଓଡ଼ିଶା' ୧୯୮୪ରେ ଓଡ଼ିଶା ଷ୍ଟେଟ୍ ମ୍ୟୁଜିୟମ୍ ଦ୍ୱାରା ପ୍ରକାଶିତ ହୋଇଥିଲା । ଓଡ଼ିଶା ଚିତ୍ରକଳା ସଂପର୍କରେ ଅବଶ୍ୟ ବିଭିନ୍ନ ଗବେଷଣାମୂଳକ ପ୍ରବନ୍ଧ ପତ୍ରପତ୍ରିକା ଓ ସଂକଳନମାନଙ୍କରେ ସ୍ଥାନିତ ହୋଇଥିଲା ।



ହାତୀ ମହାରଣାଙ୍କ ସହିତ ଅଣସର ପଟି ଅଙ୍କନ ବେଳେ, ପୁରୀ ୧୯୮୧

୧୯୮୩ରେ ସୁବାସ ପାଣି (ଓଡ଼ିଶା ସରକାରଙ୍କ ଶିଳ୍ପ ବିଭାଗର ତତ୍କାଳୀନ ନିର୍ଦ୍ଦେଶକ) ଓ ମୁଁ ପଟଚିତ୍ରଶିଳ୍ପୀମାନଙ୍କ ଗ୍ରାମ ରଘୁରାଜପୁର ଯାଇଥିଲୁ ।

ସେତେବେଳେ ଅର୍ଥାତ୍, ପ୍ରାୟ ପଚିଶି ବର୍ଷ ତଳେ ରଘୁରାଜପୁର ଦେଶବିଦେଶରେ ପ୍ରାୟ ପରିଚିତ ନ ଥିଲା । ଜଗନ୍ନାଥ ପ୍ରସାଦଙ୍କ 'ପୁରୀ ପେଣ୍ଟିଙ୍ଗସ୍' ପ୍ରକାଶିତ ହୋଇସାରିଥିବା ସଂପର୍କରେ ମୁଁ ଅବହିତ ନ ଥିଲି; ସୁବାସବାବୁ ବୋଧହୁଏ ଅବହିତ ଥିଲେ । ମୋର ରଘୁରାଜପୁର ଯାତ୍ରା ଅନୁଭୂତି 'ଶିଳ୍ପୀମାନଙ୍କ ଗାଁ' (ଲୁଖି ପାହାଡ଼ରେ ବାଘ, ୧୯୮୮) । ତାହାର କିୟଦଂଶ ଏଠାରେ ଉଦ୍ଧାର କରିବା ଅପ୍ରାସଙ୍ଗିକ ହୋଇ ନ ପାରେ :

'ସେ ଗାଁ'ରେ ପ୍ରାୟ ସମସ୍ତେ ଶିଳ୍ପୀ, ଅଧିକାଂଶ ପଟଚିତ୍ର କରନ୍ତି, ଅନ୍ୟମାନେ କାଠରେ ତିଆରି କରନ୍ତି ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ମୂର୍ତ୍ତି, ଘୋଡ଼ା, ହାତୀ, ସିଂହ କିମ୍ବା ମୋଟା କାଗଜରେ ତିଆରି କରନ୍ତି ବିଭିନ୍ନ ଆକାରର ମୁଖା – ଦେବତା ଓ ପଶୁପକ୍ଷୀମାନଙ୍କର ।

ପୁରୀ ଜିଲ୍ଲାର ସାକ୍ଷୀଗୋପାଳ ନିକଟସ୍ଥ ଚନ୍ଦନପୁରରୁ ଅଳ୍ପ ଦୂରରେ ସେ ଗାଁ – ରଘୁରାଜପୁର । ଚାଲିଗଲେ ପାଞ୍ଚମିନିଟ୍‌ର ବାଟ, ଜିପ୍‌ରେ ଗାଁ ମୁଣ୍ଡଯାଏଁ ଯାଇହେବ । କିନ୍ତୁ ରାସ୍ତାର ଅବସ୍ଥା ଦୃଷ୍ଟିରୁ ଜିପ୍‌ରେ ଯିବା ନିରାପଦ ନୁହେଁ । ... ଜିପ୍‌ରେ ସେ ଗାଁ'କୁ ଗଲାବେଳେ ମୋର ମନେହେଉଥିଲା, ଜିପ୍‌ଟି ଯେ କୌଣସି ମୁହୂର୍ତ୍ତରେ ଓଲଟି ପଡ଼ିବ । କିନ୍ତୁ ଅଭିଜ୍ଞ ସରକାରୀ ଡ୍ରାଇଭର୍ କହିଲା – ସେ ଅନେକ ଥର ଜିପ୍‌ରେ ଗାଁ'କୁ ଯାଇଛି, ଭୟର କାରଣ ନାହିଁ ।

... ଶିଳ୍ପୀମାନଙ୍କ ସହିତ କଥାବାର୍ତ୍ତାରୁ ମନେ ହେଉଥିଲା, ସରକାରୀ ଅଫିସର ଓ ସହରର ଭଦ୍ରଲୋକମାନଙ୍କ ସହିତ ମିଳାମିଶାରେ ସେମାନେ ଅଭ୍ୟସ୍ତ । ସେମାନଙ୍କ ଆର୍ଥିକ ଅବସ୍ଥା ଅସ୍ୱଚ୍ଛଳ ନୁହେଁ । କେବଳ ପାରଂପରିକ ରୀତିରେ ଚିତ୍ର ନ ଆଙ୍କି ନୂତନ ବିଷୟବସ୍ତୁ, ନୂତନ ଟେକ୍‌ନିକ୍‌ରେ ଚିତ୍ର ଅଙ୍କନ କରିବା ପାଇଁ ସେମାନେ ମୋଟାମୋଟି ପ୍ରସ୍ତୁତ ।'

'ପୁରୀ ପେଣ୍ଟିଙ୍ଗସ୍' ଗ୍ରନ୍ଥଟି ତେରଟି ଅଧ୍ୟାୟରେ ଲିଖିତ । ପରିଶିଷ୍ଟରେ ଜଗନ୍ନାଥ ମନ୍ଦିର ବିବରଣୀରେ ଚିତ୍ରକାରମାନଙ୍କ ସଂପର୍କରେ ଯାହା ଉଲ୍ଲେଖ ଅଛି, ତାହା ଏ ଗ୍ରନ୍ଥରେ ଉଦ୍ଧାର କରାଯାଇଛି । ତାହା ସହିତ ପଟଚିତ୍ର ଓ ଓଡ଼ିଆ ସାହିତ୍ୟ ମଧ୍ୟରେ ନିହିତ ସଂପର୍କ ଆଲୋଚିତ ହୋଇଛି । ଏହି ତେରଟି ଅଧ୍ୟାୟରେ ଚିତ୍ରକାରର ପରିବେଶ, ଜାତି ବିଭାଗ, ଜଗନ୍ନାଥ ମନ୍ଦିରର ଛତିଶା ନିଯୋଗ, ଚିତ୍ରକାର ସେବା, ସେବା ପ୍ରଚଳନର ଆରମ୍ଭ, ପଟଚିତ୍ରର ବିବର୍ତ୍ତନ, ପଟଚିତ୍ର କଳାର ଅବକ୍ଷୟ ଓ ଉତ୍‌ଥାନ, ପଟଚିତ୍ର ପାଇଁ ବ୍ୟବହୃତ ସାମଗ୍ରୀ ଓ ଉପାଦାନ, ପଟଚିତ୍ରର ଜନପ୍ରିୟ ବିଷୟବସ୍ତୁ, ପଟଚିତ୍ର ପ୍ରଶିକ୍ଷଣ ଓ ପରଂପରା, ପଟଚିତ୍ରର ସାମଗ୍ରିକ ମୂଲ୍ୟାୟନ ଆଲୋଚିତ । ଅଧ୍ୟାୟଗୁଡ଼ିକର ନାମକରଣରୁ ହିଁ ଗ୍ରନ୍ଥର ଆଲୋଚ୍ୟ ବିଭାବ ସଂପର୍କରେ କିଞ୍ଚିତ୍ ଧାରଣା କରିହେବ ।

ସୁମନ୍ୟୁ ଶତପଥୀ (ଇଂରାଜୀ ପ୍ରଫେସର, ଦିଲ୍ଲୀ) 'ପୁରୀ ପେଣ୍ଟିଙ୍ଗସ୍' ସଂପର୍କରେ ଯଥାର୍ଥରେ ଲେଖିଛନ୍ତି, 'ଏ ଗ୍ରନ୍ଥରେ ତଥ୍ୟଭିତ୍ତିକ ଗବେଷଣାପ୍ରସୂତ ସିଦ୍ଧାନ୍ତ ଓ କଥାଶିଳ୍ପ ଶୈଳୀର ଅପୂର୍ବ ସମନ୍ୱୟ ଘଟିଛି' (ଦେଖନ୍ତୁ ୱାର୍ଡ୍‌ସ୍ ଅବ୍ କ୍ୟାନ୍‌ଭାସ୍) । ଗ୍ରନ୍ଥଟି ସୁଖପାଠ୍ୟ ଓ ସାବଲୀଳ; ଭାରତୀୟ ତଥା ଆନ୍ତର୍ଜାତିକ ପରିପ୍ରେକ୍ଷୀରେ ଲିଖିତ; ଆଞ୍ଚଳିକ ଏକଦର୍ଶିତାରୁ ସଂପୂର୍ଣ୍ଣ ମୁକ୍ତ ।


ପୁରୀ, ଅଗଷ୍ଟ ୧୯୮୧

ଜଗନ୍ନାଥ ପ୍ରସାଦ ଏ ଗ୍ରନ୍ଥର ପରିସରକୁ ଆଣିଛନ୍ତି ବହୁ ଐତିହାସିକ ଓ କଳା ସମାଲୋଚକଙ୍କ ପ୍ରଦତ୍ତ ତଥ୍ୟ ଓ ସିଦ୍ଧାନ୍ତ – ଆଣ୍ଡ୍ରିୟୁ ଷ୍ଟର୍ଲିଂ, ଜେମ୍ସ୍ ଫର୍ଗୁସନ୍, ଡବ୍ଲୁ.ଡବ୍ଲୁ. ହଣ୍ଟର୍, ମନମୋହନ ଗାଙ୍ଗୁଲି, ଆଲିସ୍ ବୋନର୍, ଷ୍ଟେଲା କ୍ରମ୍‌ରିସ୍ , ଡି. ପି. ଘୋଷ୍ , ଓ. ସି. ଗାଙ୍ଗୁଲିଙ୍କୁ । ଓଡ଼ିଶା ତଥା ଓଡ଼ିଶା ବାହାରର ବିଭିନ୍ନ ମ୍ୟୁଜିୟମ୍‌ରୁ ତଥ୍ୟ ସଂଗ୍ରହ କରିଛନ୍ତି । ପୁରୀ ଓ ରଘୁରାଜପୁରର ଚିତ୍ରଶିଳ୍ପୀମାନଙ୍କ ଗହଣରେ ମାସମାସ ରହି ସେମାନଙ୍କ ସହିତ ଆଲୋଚନା କରିଛନ୍ତି । ସେଥିପାଇଁ ଗ୍ରନ୍ଥଟି ଏକ ସଙ୍ଗେ ତଥ୍ୟଭିତ୍ତିକ ଓ ଜୀବନ୍ତ । ଜଗନ୍ନାଥ ପ୍ରସାଦଙ୍କ 'ପୁରୀ ପେଣ୍ଟିଙ୍ଗସ୍' ପାଠ କଲେ ମନେହୁଏ, ପଟଚିତ୍ର କଳା ଏକ ପରଂପରା, ଏକ ରୀତି – ପୁଣି ଜୀବନ୍ତ ରକ୍ତମାଂସର ଏକ ଚଳମାନ ରୂପ । 'ପୁରୀ ପେଣ୍ଟିଙ୍ଗସ୍' ସଂପର୍କରେ ଦେଶବିଦେଶରେ ଯେତେ ଆଲୋଚନା ପ୍ରକାଶିତ ହୋଇଛି, ତାହାର ଉଦ୍ଧୃତି ପ୍ରକାଶ କରିବା ଏଠାରେ ସମ୍ଭବ ନୁହେଁ । ତେବେ ଏବରହାର୍ଡ୍ ଫିସର୍‌ଙ୍କ ଦୀର୍ଘ ଆଲୋଚନାର ଗୋଟିଏ ଅଂଶ ଦେଖନ୍ତୁ :

'ଜେ. ପି. ଦାସଙ୍କ ଦୃଷ୍ଟିଭଙ୍ଗୀ ଭାରତୀୟ କଳା ଐତିହାସିକମାନଙ୍କଠାରୁ ଭିନ୍ନ । ସାମାଜିକ, ପ୍ରତ୍ନତାତ୍ତ୍ୱିକ, ଐତିହାସିକ, କଳାତ୍ମକ – ସବୁ ତାଙ୍କ ବିଚାର ପରିସରର ଅନ୍ତର୍ଭୁକ୍ତ । ଏ ଗ୍ରନ୍ଥ ଅତ୍ୟନ୍ତ ମୂଲ୍ୟବାନ୍ ଗବେଷଣାପ୍ରସୂତ । ଭାରତୀୟ ଚିତ୍ରକାର ସଂପ୍ରଦାୟର ଇତିହାସ ସଂପର୍କରେ ଏହା ଆଲୋକପାତ କରେ । ଏ ସଂପ୍ରଦାୟକୁ ବୁଝିବାରେ ଯଥେଷ୍ଟ ସାହାଯ୍ୟ କରେ ।'

(ଓ୍ୱାର୍ଡ୍‌ସ୍ ଅଫ୍ କ୍ୟାନ୍‌ଭାସ୍)

ଏ ଗ୍ରନ୍ଥ ସଂପର୍କରେ ଓଡ଼ିଶାର ପ୍ରବୀଣ ରାଜନୀତିଜ୍ଞ ତଥା ଐତିହାସିକ ହରେକୃଷ୍ଣ ମହତାବ ଯଥାର୍ଥରେ ଉଲ୍ଲେଖ କରିଛନ୍ତି, 'ଏହା ଭାରତୀୟ ସଂସ୍କୃତି କ୍ଷେତ୍ରକୁ ଏକ ମହତ୍ ଅବଦାନ ।'

(ଝଙ୍କାର, ଡିସେମ୍ବର, ୧୯୮୨)

'ପୁରୀ ପେଣ୍ଟିଙ୍ଗସ୍' ପ୍ରକାଶିତ ହେବା ପରେ ଓଡ଼ିଶାର ପଟଚିତ୍ର ତଥା ପାରଂପରିକ ଚିତ୍ରକଳା ଓ ରଘୁରାଜପୁରର ପ୍ରସିଦ୍ଧି ଯେ ବହୁ ପରିମାଣରେ ବୃଦ୍ଧିଲାଭ କରିଛି, ଏହା ନିଶ୍ଚିତ । ପଟଚିତ୍ର କଳା ସଂପ୍ରତି ଜାତୀୟ ଓ ଆନ୍ତର୍ଜାତିକ ସ୍ତରରେ ମାନ୍ୟତାପ୍ରାପ୍ତ ହୋଇଛି । ରଘୁରାଜପୁରର ଚିତ୍ରଶିଳ୍ପୀ ଜଗନ୍ନାଥ ମହାପାତ୍ରଙ୍କୁ ଉତ୍କଳ ବିଶ୍ୱବିଦ୍ୟାଳୟ ୧୯୯୭ ସମାବର୍ତ୍ତନ ଉତ୍ସବରେ ଡି.ଲିଟ୍. ଉପାଧିରେ ଭୂଷିତ କରିଛନ୍ତି । ରଘୁରାଜପୁର ନିକଟସ୍ଥ ଦାଣ୍ଡ ଗାଁ'ର ପଟଚିତ୍ର ଶିଳ୍ପୀ ଅନନ୍ତ ମହାରଣା ସମଗ୍ର ଦେଶର ଶ୍ରେଷ୍ଠତମ ଚିତ୍ରଶିଳ୍ପୀ ଭାବରେ ୨୦୦୩ରେ ଶିଳ୍ପୀଗୁରୁ ସମ୍ମାନରେ ସମ୍ମାନିତ ହୋଇଛନ୍ତି ।

# ସମ୍ପାଦକୀୟ

**ଓଡ଼ିଶାର ଚିତ୍ରକଳା—**

ଓଡ଼ିଶାର କାରୁକାର୍ଯ୍ୟ ଓ ସ୍ଥାପତ୍ୟ ସମ୍ବନ୍ଧରେ ବହୁ ଗବେଷକ ବହୁ ତଥ୍ୟପୂର୍ଣ୍ଣ ପୁସ୍ତକ ଲେଖିଥିଲେ ମଧ୍ୟ ଓଡ଼ିଶାର ଚିତ୍ରକଳା ସମ୍ବନ୍ଧରେ ସେପରି [illegible] ନ ଥିଲା । ଏ ଦିଗରେ ବିଶିଷ୍ଟ କବି ଓ ନାଟ୍ୟକାର ଶ୍ରୀ ଜଗନ୍ନାଥ ପ୍ରସାଦ ଦାସ ଦୀର୍ଘକାଳ ଗବେଷଣା କରି 'ପୁରୀ ପେଣ୍ଟିଙ୍ଗସ' ନାମରେ ପାଖାପାଖି ଦୁଇଶହ ପୃଷ୍ଠାର ଯେଉଁ ପୁସ୍ତକ ପ୍ରକାଶ କରିଛନ୍ତି, ତାହା ଭାରତୀୟ ସଂସ୍କୃତି କ୍ଷେତ୍ରକୁ ଏକ ମହତ ଅବଦାନ । ଓଡ଼ିଶାରେ ଚିତ୍ରକାରମାନେ ଆଜିପର୍ଯ୍ୟନ୍ତ ଆଜିକାଲିକାର ପ୍ରଗତିଯୁଗର ଆଲୋକ ଠାରୁ ବହୁ ଦୂରରେ ଅନ୍ଧକାରରେ ରହି ମଧ୍ୟ ସେମାନଙ୍କ ପାରମ୍ପରିକ କାର୍ଯ୍ୟ ଚାଲୁ ରଖିଛନ୍ତି ଏହାହିଁ ଏ ଜାତିର ବିଶେଷତ୍ୱ । ପୁରୀଜିଲ୍ଲାର ରଘୁରାଜପୁର ଗ୍ରାମର ନାମ ରେଭିନ୍ୟୁ ମେପ୍‌ରେ ନାହିଁ । ଏ ଗ୍ରାମକୁ ମଧ୍ୟ ଭଲ ରାସ୍ତାଟିଏ ନାହିଁ । ଏହି ଗ୍ରାମରେ ବହୁଦିନ ରହି ଶ୍ରୀ ଜଗନ୍ନାଥ ପ୍ରସାଦ ଦାସ ଓଡ଼ିଶାର ଚିତ୍ରକଳା ସମ୍ବନ୍ଧରେ ଗବେଷଣା ଆରମ୍ଭ କଲେ । କୌତୂହଳର ବିଷୟ ଏହି ବହୁ ବିଦେଶୀ ପର୍ଯ୍ୟଟକ ଏ ଗ୍ରାମକୁ ଚିତ୍ରକଳା ସଂଗ୍ରହ ପାଇଁ ଯାଆନ୍ତି । କେବଳ ଏହି ଗ୍ରାମ ନୁହେଁ, ବହୁ ଗ୍ରାମରେ ଏପରିକ ବହୁ ଆଦିମଜାତି ଅଧ୍ୟୁଷିତ ଗ୍ରାମମାନଙ୍କରେ ଚିତ୍ରକଳା ଜନଜୀବନ ସହିତ ଓତଃପ୍ରୋତ ଭାବରେ ଜଡ଼ିତ । ସାଧାରଣ ପୂଜା ପାର୍ବଣରେ ଘରମାନଙ୍କରେ ଯେଉଁ ଝୋଟି (ବଙ୍ଗଳାରେ ଆଲ୍‌ପନା) ଦିଆହୁଏ, ସେଥିରୁ ଜଣାଯିବ ଓଡ଼ିଶା ଜନଜୀବନ ସହିତ ଚିତ୍ରକଳାର ସମ୍ପର୍କ । ପଟ୍ଟଚିତ୍ର ବୋଲି ଯାହା ପ୍ରସିଦ୍ଧ, ତାହା ସାଧାରଣ ପଟା ବା ଏପରିକ ତାଳପତ୍ର ପୋଥିର ପତ୍ରମାନଙ୍କରେ ଅଙ୍କିତ ବହୁବିଧ ଚିତ୍ର । 'ପୁରୀ ପେଣ୍ଟିଙ୍ଗ' ପୁସ୍ତକରେ ବହୁ ଚିତ୍ରର ଫଟୋ ପ୍ରଦତ୍ତ ହୋଇଛି ଏବଂ ଏସବୁ କେଉଁଠୁ ସଂଗୃହୀତ ହୋଇଛି । ତାହା ମଧ୍ୟ ବର୍ଣ୍ଣିତ ଅଛି । ପଟ୍ଟଚିତ୍ର ସମ୍ବନ୍ଧରେ ପୁରୀପେଣ୍ଟିଙ୍ଗ ହେଉଛି ସର୍ବଶ୍ରେଷ୍ଠ ପୁସ୍ତକ । ପୁସ୍ତକର ମୁଦ୍ରଣ ଚମତ୍କାର ଅନୁରୂପ । ଲେଖକ ଶ୍ରୀ ଜଗନ୍ନାଥ ପ୍ରସାଦ ଦାସଙ୍କୁ ଆମ୍ଭେମାନେ ସାଧୁବାଦ ଜ୍ଞାପନ କରୁଛୁ । ସେ ଓଡ଼ିଶାରେ ସାଂସ୍କୃତିକ ଜୀବନର ଏକ ଅନ୍ଧକାରମୟ ଅଂଶରେ ଉଜ୍ଜ୍ୱଳ ଆଲୋକପାତ କରିଛନ୍ତି ।

ଶ୍ରୀ ହରେକୃଷ୍ଣ ମହତାବ

ଝଙ୍କାର, ଡିସେମ୍ବର ୧୯୮୨

**॥ ଚିତ୍ର-ପୋଥି ॥**

ଡକ୍ଟର ଜଗନ୍ନାଥ ପ୍ରସାଦ ଦାସ, ଜଣେ କବି, ଗାଳ୍ପିକ ଏବଂ ନାଟ୍ୟକାର ସ୍ୱଭାବରେ ପ୍ରସିଦ୍ଧି ଲାଭ କରିଛନ୍ତି । ଏବେ ଓଡ଼ିଶାର ତାଳପତ୍ର ପୋଥି ସମ୍ବନ୍ଧରେ ଯେଉଁ 'ଚିତ୍ରପୋଥି' ପୁସ୍ତକଟି ପ୍ରକାଶ କରିଛନ୍ତି, ସେଥିରେ ସେ ନିଜର ଗବେଷଣା ସାମର୍ଥ୍ୟ ପ୍ରମାଣ କରିଛନ୍ତି । ପୁସ୍ତକର ମୁଦ୍ରଣ ମଧ୍ୟ ଆକର୍ଷଣୀୟ । ସେ ନିମ୍ନଲିଖିତ ସଂଗ୍ରହାଳୟ ଓ ମିଉଜିଅମମାନଙ୍କରୁ ତଥ୍ୟ ସଂଗ୍ରହ କରିଛନ୍ତି ।

୧-ଓଡ଼ିଶା ଷ୍ଟେଟ ମିଉଜିଅମ; ୨-ନେସନେଲ୍ ମିଉଜିଅମ, ନିଉଦିଲ୍ଲୀ; ୩-ଅରବିନ୍ଦ ସଂଗ୍ରହାଳୟ, ଭଦ୍ରପୁର, ପୁରୀ; ୪-ଓଡ଼ିଶା ଷ୍ଟେଟ୍ ଆର୍କାଇଭସ, ୫-ଉତ୍କଳ ୟୁନିଭରସିଟି ଲାଇବ୍ରେରୀ, ୬-ବ୍ରିଟିଶ ଲାଇବ୍ରେରୀ, ଭୁବନେଶ୍ୱର; ୭-ମିଉଜିଅମ ରିଟ୍‌ବର୍ଗ, ଜୁରିକ (ଏମ·ଆର); ୮-ବିଶ୍ୱଭାରତୀ, ଶାନ୍ତିନିକେତନ; ୯-ନଜଗୁର୍ଲ ପବ୍ଲିକ ଲାଇବ୍ରେରୀ (ଏନ·ପି·ଆର); ୧୦-ରଘୁନନ୍ଦନ ଲାଇବ୍ରେରୀ, ପୁରୀ; ୧୧-ଆଶୁତୋଷ ମିଉଜିଅମ, କଲିକତା; ୧୨-ନିଜଦାସ ସଂଗୃହୀତ ।

ଗବେଷଣାରେ ଡକ୍ଟର ଦାସ ଯେ ପରିଶ୍ରମ ଓ ସଂପୂର୍ଣ୍ଣ ମନୋଯୋଗ କରିଛନ୍ତି, ଏଥିରେ ସନ୍ଦେହ ନାହିଁ । ତାଙ୍କର ପୁସ୍ତକରେ କେବଳ ପୋଥିମାନଙ୍କରେ ଅଙ୍କିତ ଚିତ୍ରାବଳୀ ଦିଆହୋଇ ନାହିଁ, ଏଥିସହ ଓଡ଼ିଆ ସାହିତ୍ୟର କ୍ରମବିକାଶରେ ମଧ୍ୟ ଆଲୋକପାତ କରାହୋଇଛି । ତାଙ୍କର ପୁସ୍ତକରେ ଲିଖିତ ପ୍ରବନ୍ଧ ଓଡ଼ିଆରେ ଅନୁବାଦିତ ହୋଇ 'ଝଙ୍କାର' ପରବର୍ତ୍ତୀ ସଂଖ୍ୟାରେ ପ୍ରକାଶିତ ହେବ । ଓଡ଼ିଶାର କଳା ଓ ସାହିତ୍ୟକୁ ଡକ୍ଟର ଦାସ ଯେ ବିଶ୍ୱନିକଟରେ ପହଞ୍ଚାଇଛନ୍ତି, ଏଥିପାଇଁ ସେ ଧନ୍ୟବାଦାର୍ହ । ଓଡ଼ିଆଜାତି ତାଙ୍କଠାରେ କୃତଜ୍ଞ ।

ଝଙ୍କାର, ଡିସେମ୍ବର ୧୯୮୫

'ପୁରୀ ପେଣ୍ଟିଙ୍ଗ୍ସ୍' ପରେ ୧୯୮୫ରେ ଜଗନ୍ନାଥ ପ୍ରସାଦ ପ୍ରକାଶ କଲେ 'ଚିତ୍ରପୋଥି : ଇଲଷ୍ଟ୍ରେଟେଡ୍ ପାମ୍‌ଲିଫ୍ ମ୍ୟାନୁସ୍‌କ୍ରିପ୍‌ଟ୍‌ସ୍ ଫ୍ରମ୍ ଓଡ଼ିଶା' ଏବଂ ୧୯୯୧ରେ 'ପାମ୍‌ଲିଫ୍ ମିନିଏଚର୍‌ସ୍ : ଦ ଆର୍ଟ୍ ଅଫ୍ ରଘୁନାଥ ପୃଷ୍ଟି ଅଫ୍ ଓଡ଼ିଶା' । ତୃତୀୟ ଗ୍ରନ୍ଥଟିରେ ତାଙ୍କ ସହିତ ଯୁଗ୍ମ ଲେଖିକା ଥିଲେ ଜୋଆନା ୱିଲିୟମ୍‌ସ୍ ।

ଚିତ୍ରପୋଥି ସଂପାଦନା/ପ୍ରଣୟନ କରିବାର ଆଭିମୁଖ୍ୟ ସଂପର୍କରେ ଗ୍ରନ୍ଥଟିରେ ଉଲ୍ଲେଖ ଅଛି :

ତାଳପତ୍ର ପୋଥିରେ ଚିତ୍ର ଅଙ୍କନ କରିବା ଓଡ଼ିଶାର ଏକ ବିଶିଷ୍ଟ ପାରଂପରିକ କଳା । କିନ୍ତୁ ଏ ସଂପର୍କରେ ଅନେକେ ଅବହିତ ନୁହନ୍ତି । ତାଳପତ୍ର ପୋଥିରେ କାବ୍ୟ ଲିଖନ ସହିତ ଚିତ୍ର ମଧ ଅଙ୍କନ କରାଯାଉଥିଲା । ଅଷ୍ଟାଦଶ ଶତାବ୍ଦୀ ଓଡ଼ିଆ କାବ୍ୟ ସାହିତ୍ୟର ସ୍ୱର୍ଣ୍ଣଯୁଗ । ଏହି ସମୟରେ ବହୁ ଚିତ୍ରପୋଥି ଅର୍ଥାତ୍ ଉଭୟ ପାଠ ଓ ଚିତ୍ରସମ୍ବଳିତ ତାଳପତ୍ର ପୋଥି ରଚିତ ହୋଇଥିଲା ।

ଏହି ଗ୍ରନ୍ଥରେ ତାଳପତ୍ର ପୋଥି ରଚନାର ପରଂପରା ତଥା ଏହି ପରଂପରା ମାଧମରେ ଓଡ଼ିଆ କାବ୍ୟ ଓ ଚିତ୍ରକଳାର ବିବର୍ତ୍ତନ ଆଲୋଚିତ ହୋଇଛି । ଚିତ୍ରର ସ୍ୱରୂପ, ଅଙ୍କନରୀତି ତଥା ଚିତ୍ରକାରମାନଙ୍କ ସଂପର୍କରେ ଆଲୋକପାତ କରାଯାଇଛି ।

ପନ୍ଦରଟି ଅଧ୍ୟାୟରେ ବିଭକ୍ତ ଏହି ଗ୍ରନ୍ଥଟିର ପୃଷ୍ଠା ସଂଖ୍ୟା ପ୍ରାୟ ଶହେ ତିରିଶି । ଏଥିରେ ମୂଳ କାବ୍ୟର କିୟଦଂଶ ଓ ତାହା ଉପରେ ଆଧାରିତ ଚିତ୍ରମାନ ପ୍ରଦତ୍ତ । ଏହି ଗ୍ରନ୍ଥ ପ୍ରଣୟନ ପାଇଁ ଜଗନ୍ନାଥ ପ୍ରସାଦ ଭାରତ, ଇଂଲଣ୍ଡ ଓ ଆମେରିକାର ବିଭିନ୍ନ ମ୍ୟୁଜିୟମ୍‌ରୁ ତଥ୍ୟ ସଂଗ୍ରହ କରିଥିଲେ; ପ୍ରମୁଖ କଳା ସମାଲୋଚକମାନଙ୍କ ସହିତ ପରାମର୍ଶ କରିଥିଲେ; ଓଡ଼ିଆ ଓ ଇଂରାଜୀରେ ପ୍ରକାଶିତ ବହୁ ଗ୍ରନ୍ଥ ଓ ଆଲୋଚନା ଅଧୟନ କରିଥିଲେ ।

ତୃତୀୟ ଗ୍ରନ୍ଥ 'ପାମ୍‌ଲିଫ୍ ମିନିଏଚର୍‌ସ୍' ଊନବିଂଶ ଶତାବ୍ଦୀର ପୋଥି ଚିତ୍ରଶିଳ୍ପୀ ଗଞ୍ଜାମର ରଘୁନାଥ ପୃଷ୍ଟିଙ୍କ ଜୀବନ ଓ କୃତି ସଂପର୍କରେ । ଜଣେ ପାରଂପରିକ ପୋଥି ଚିତ୍ରଶିଳ୍ପୀଙ୍କ ସଂପର୍କରେ ସର୍ବଭାରତୀୟ ପରିପ୍ରେକ୍ଷୀରେ ଏଭଳି ଗ୍ରନ୍ଥଟିଏ ବୋଧହୁଏ ପୂର୍ବରୁ ଲିଖିତ ହୋଇ ନ ଥିଲା । ଗ୍ରନ୍ଥଟିର ପ୍ରଣୟନ ସଂପର୍କରେ ପୁସ୍ତକରେ ପ୍ରଦତ୍ତ ସୂଚନା :

(କ) ରଘୁନାଥ ପୃଷ୍ଟି ଯେ ଜଣେ ଉଚ୍ଚମାନର ଶିଳ୍ପୀ, ଏହା ପ୍ରମାଣିତ କରିବା ।

(ଖ) ପୃଷ୍ଟିଙ୍କ ଚିତ୍ର ସହିତ ଓଡ଼ିଶାର ଅନ୍ୟ ଶିଳ୍ପୀମାନଙ୍କ ଚିତ୍ରର ତୁଳନା କରି ଓଡ଼ିଶା ଚିତ୍ରକଳା ପରଂପରାର ବୈଶିଷ୍ଟ୍ୟ ପ୍ରତିପାଦନ କରିବା ।

(ଗ) ପୃଷ୍ଟିଙ୍କ ଚିତ୍ରକଳା ମାଧମରେ ତାଙ୍କ ସମୟର ସାମାଜିକ ତଥା ପାରିପାର୍ଶ୍ୱିକ ଅବସ୍ଥାର ବିବରଣୀ ପ୍ରଦାନ କରିବା ।

୧୯୮୨-୯୧ ମଧରେ ଜଗନ୍ନାଥ ପ୍ରସାଦଙ୍କର ଆଲୋଚିତ ତିନୋଟି ଗ୍ରନ୍ଥ ପ୍ରକାଶିତ ହୋଇଥିଲା । ଶେଷୋକ୍ତ ଦୁଇଟି ଗ୍ରନ୍ଥ 'ପୁରୀ ପେଣ୍ଟିଙ୍ଗ୍ସ୍'ର ପରିଶିଷ୍ଟ ବା ବିସ୍ତୃତୀକରଣ ବୋଲି ମଧ କୁହାଯାଇପାରେ । ମୋଟ ଉପରେ ଓଡ଼ିଶାର ଚିତ୍ରକଳା-ପଟଚିତ୍ର-ଚିତ୍ରପୋଥି-ସମାଲୋଚନାରେ ଏହି ତିନୋଟି ଗ୍ରନ୍ଥ ଜଗନ୍ନାଥ ପ୍ରସାଦଙ୍କୁ

କଳା ସମାଲୋଚକଭାବରେ ବିଶେଷ ମର୍ଯ୍ୟାଦା ପ୍ରଦାନ କଲା । ଏହାପରେ ସ୍ୱାଭାବିକଭାବରେ ଆଶା କରାଯାଉଥିଲା – ଜଗନ୍ନାଥ ପ୍ରସାଦ ତାଙ୍କର କଳା ସମାଲୋଚନା ଓ ଗବେଷଣା ଜାରି ରଖିବେ । କିନ୍ତୁ ତାହା ହେଲା ନାହିଁ । ଏକଦା ଆଳାପ ଅବସରରେ ସେ ଦିନନାଥ ପାଠୀଙ୍କୁ କହିଲେ, 'କଳା ସମାଲୋଚନା ଯଥେଷ୍ଟ ହେଲା । ବର୍ତ୍ତମାନ ମୁଁ ସମସ୍ତ ସମୟ ସୃଜନାତ୍ମକ ସାହିତ୍ୟ ପାଇଁ ନିୟୋଜିତ କରିବି' (ଦେଖନ୍ତୁ, ୱାର୍ଡ୍‌ସ୍ ଅବ୍ କ୍ୟାନ୍‌ଭାସ୍) । ହୁଏତ କଳା ସମାଲୋଚନାରେ ତାଙ୍କର ଆଗ୍ରହ ଅବ୍ୟାହତ ରହିଲା, କିନ୍ତୁ ଏହାପରେ କଳା ସଂପର୍କରେ ତାଙ୍କର କୌଣସି ଗ୍ରନ୍ଥ ବା ଉଲ୍ଲେଖଯୋଗ୍ୟ ପ୍ରବନ୍ଧ ପ୍ରକାଶିତ ହୋଇ ନାହିଁ ।

ଏଠାରେ କହିବା ଅପ୍ରାସଙ୍ଗିକ ନୁହେଁ ଯେ ଗବେଷଣା ଓ ସୃଜନାତ୍ମକ କ୍ରିୟା ମଧ୍ୟରେ ବାସ୍ତବରେ ବିଭାଜନ ରେଖା ନାହିଁ । ଜଣେ ଗବେଷକ ସୃଜନଶୀଳ ହୋଇ ନ ଥିଲେ, ତା'ର କୃତି ହୁଏ ନିରସ, ଗୁଡ଼ାଏ ଶୁଷ୍କ ତଥା ମୃତ ତଥ୍ୟର ଏକତ୍ରୀକରଣ । ସେହିପରି ଜଣେ ସୃଜନଶୀଳ ବ୍ୟକ୍ତିଠାରେ ଗବେଷକର ମନୋବୃତ୍ତି ନ ଥିଲେ, ତାହାର କୃତି ହୁଏ ଭାଷା ବା ରଙ୍ଗର ଗୋଟାଏ ଆକାର, ସେଥିରେ ନ ଥାଏ ଶକ୍ତି ବା ଜୀବନ । 'ପୁରୀ ପେଣ୍ଟିଙ୍ଗସ୍'ରେ ସୃଜନଶୀଳ ଗବେଷକର ମାନସିକତା ଯେପରି ସ୍ପଷ୍ଟ, ସେହିପରି 'ଦେଶ କାଳ ପାତ୍ର' ଉପନ୍ୟାସରେ ଗବେଷକର ନିଷ୍ଠା ଓ ସାଧନା ।

ଦିନନାଥ ପାଠୀଙ୍କ ସହିତ ଉପରୋକ୍ତ ଆଳାପରେ ଜଗନ୍ନାଥ ପ୍ରସାଦ ମନ୍ତବ୍ୟ ଦେଇଥିଲେ, ଓଡ଼ିଶାର ଚିତ୍ରକଳା ସଂପର୍କରେ ତିନିଜଣ ହିଁ ମୂଲ୍ୟବାନ ଗବେଷଣା କରିଛନ୍ତି – 'ଏବର୍‌ହାର୍ଡ୍ ଫିସର୍, ଜୋଆନା ୱିଲିୟମସ୍ ଓ ଦିନନାଥ ପାଠୀ' । ଜଗନ୍ନାଥ ପ୍ରସାଦଙ୍କ ସହିତ ଦ୍ୱିମତ ହେବାର ନାହିଁ । ତେବେ ଏହି ତିନୋଟି ନାମ ସହିତ ସେ ଆଉ ଗୋଟିଏ ନାମ ଯୋଡ଼ି ପାରିଥାନ୍ତେ – ହୁଏତ ସୌଜନ୍ୟର ତାଡ଼ନାରେ ସେ ସେପରି କରି ନ ଥିଲେ । ଚତୁର୍ଥ ନାମଟି ହେଉଛି – ଜଗନ୍ନାଥ ପ୍ରସାଦ ଦାସ ।

---

# ନାଟକ, ରଙ୍ଗମଞ୍ଚ, ସିନେମା



ବିଶ୍ୱନାଥ ଦାସ, ହରିହର ମହାପାତ୍ର, ସତ୍ୟନାଥ ଦାଶ ମହାପାତ୍ର ଓ ବାବୁଲାଲ ଦୋଶୀଙ୍କ ସହିତ କଳାବିକାଶ କେନ୍ଦ୍ରର ବିଂଶ ସମାବର୍ତ୍ତନ, ୧୯୭୨

କଟକରେ ଶିକ୍ଷ ନିର୍ଦ୍ଦେଶକ ପଦରେ କାର୍ଯ୍ୟ କରୁଥିବା ସମୟରେ ଜଗନ୍ନାଥ ପ୍ରସାଦଙ୍କର ଅନ୍ତରଙ୍ଗ ସଂପର୍କ ଥିଲା ଅନନ୍ତ ମହାପାତ୍ର, ରବୀନ୍ଦ୍ର ନାଥ ଦାସ, ହେମନ୍ତ ଦାସ, ଡକ୍ଟର ମଧୁସୂଦନ ଖାଡ଼ଙ୍ଗା ପ୍ରଭୃତିଙ୍କ ସହିତ । ଅନନ୍ତ ଓଡ଼ିଶାର ସୁପରିଚିତ ମଞ୍ଚ ନିର୍ଦ୍ଦେଶକ ଓ ଅଭିନେତା; ଦାସ ଥିଲେ ଅଲ୍ ଇଣ୍ଡିଆ ରେଡ଼ିଓର ଡିରେକ୍ଟର; ହେମନ୍ତ ଖ୍ରୀଏଷ୍ଟ କଲେଜରେ ଜଗନ୍ନାଥ ପ୍ରସାଦଙ୍କ ସହପାଠୀ । ୧୯୭୨ରେ ସୌଖୀନ ନାଟ୍ୟ ସଂସ୍ଥା ସୃଜନୀ ପକ୍ଷରୁ ମନୋରଞ୍ଜନ ଦାସଙ୍କ 'ଅମୃତସ୍ୟ ପୁତ୍ର' ନାଟକ କଟକ ନାରୀସେବା ସଂଘରେ ମଞ୍ଚସ୍ଥ ହୋଇଥିଲା । ନିର୍ଦ୍ଦେଶକ ଥିଲେ ଅନନ୍ତ ମହାପାତ୍ର । ନାଟକ ମଞ୍ଚସ୍ଥ ହେବା ପରେ ଜଗନ୍ନାଥ ପ୍ରସାଦ ରିଭ୍ୟୁଟିଏ ଲେଖିଲେ ଦିଲ୍ଲୀରୁ ପ୍ରକାଶିତ ଇଂରାଜୀ ପତ୍ରିକା 'ଏନାକ୍ଟ୍'ରେ । ସେ ମଧ ଅନ୍ୟ କେତୋଟି ଓଡ଼ିଆ ନାଟକ ସଂପର୍କରେ ସେଥିରେ ରିଭ୍ୟୁ ଲେଖିଥିଲେ – ଯେପରି ବିଜୟ ମିଶ୍ରଙ୍କ 'ଦୁଇଟି ସୂର୍ଯ୍ୟଦଗ୍ଧ ଫୁଲକୁ ନେଇ' ।

ଜଣେ ଜଣକ ପାଇଁ, କଟକ, ୧୯୭୨
ବାମରୁ : ଏ.ପି. ମହାନ୍ତି, ଜେପି, ଜୁଇ, ମିତ୍ରା, ଅନନ୍ତ ଓ ସୁବ୍ରମଣ୍ୟମ୍



ଓଡ଼ିଆ ନାଟକ, ନିର୍ଦ୍ଦେଶନା ଓ ଅଭିନୟ ସଂପର୍କରେ ରିଭ୍ୟୁ ଲେଖିବା ମାଧ୍ୟମରେ ଯେପରି ଜଗନ୍ନାଥ ପ୍ରସାଦ ପ୍ରବେଶ କଲେ ଓଡ଼ିଆ ନାଟ୍ୟ ଜଗତରେ ! ସେତେବେଳେ ଅନନ୍ତ ମହାପାତ୍ର ଅଲ୍ ଇଣ୍ଡିଆ ରେଡ଼ିଓରେ ବେତାର ନାଟକର ନିର୍ଦ୍ଦେଶନା ଦେଉଥାନ୍ତି । କୌଣସି ଏକ ସନ୍ଧ୍ୟାରେ ଅନନ୍ତ ପ୍ରସ୍ତାବ ଦେଲେ ଜଗନ୍ନାଥ ପ୍ରସାଦଙ୍କୁ, 'ତୁମେ ରେଡିଓ ପାଇଁ ନାଟକ ଲେଖିଲେ କେମିତି ହୁଅନ୍ତା ?'

ହୁଏତ ବଂଧୁଙ୍କ କଥା ଏଡ଼ାଇ ନ ପାରି ଜଗନ୍ନାଥ ପ୍ରସାଦ ଆରମ୍ଭ କଲେ ବେତାର ନାଟକ ରଚନା । ସେ କେତୋଟି ବେତାର ନାଟକ ଲେଖିଥିଲେ, ତାହାର

ସଠିକ ବିବରଣୀ ବର୍ତ୍ତମାନ ସୁଲଭ ନୁହେଁ । ଅଲ୍ ଇଣ୍ଡିଆ ରେଡ଼ିଓ ଆର୍କାଇଭ୍ସରେ ତାଙ୍କର କେତୋଟି ପାଣ୍ଡୁଲିପି ହୁଏତ କେଉଁଠି ପଡ଼ିରହିଥିବ । ତେବେ, 'କାଚଘର' ଶୀର୍ଷକ ତାଙ୍କର ବେତାର ନାଟକଟି ସେତେବେଳେ ବିଶେଷ ଚର୍ଚ୍ଚିତ ହୋଇଥିଲା । ନାଟକଟି ଥିଲା ଛାତ୍ରମାନଙ୍କ ସମସ୍ୟା ଓ ଅସ୍ଥିରତା ସଂପର୍କରେ ।


ଅନନ୍ତ ମହାପାତ୍ର, ମୋନା ଦାସ ଓ ମଧୁସୂଦନ ଖାଡ଼ଙ୍ଗାଙ୍କ ସହ ୧୯୮୭

୧୯୭୨ ପୂର୍ବରୁ ଜଗନ୍ନାଥ ପ୍ରସାଦଙ୍କର ନାଟକରେ ଆଗ୍ରହ ନ ଥିଲା, ଏପରି ନୁହେଁ । କିନ୍ତୁ ତାଙ୍କ ନାଟକ ଅଭିନୀତ ବା ପ୍ରସାରିତ ହେବାରେ ଆପାତତଃ ସେ ବିଶେଷ ଗୁରୁତ୍ୱ ଦେଇ ନ ଥିଲେ । ମୋଟାମୋଟି କବିତା ଓ ଚିତ୍ରକଳା ତାଙ୍କୁ ଆବୋରି ରଖିଥିଲା । ତେବେ ୧୯୭୦ରେ ତାଙ୍କର ଏକ କ୍ଷୁଦ୍ର ନାଟକ 'ଜଣେ ଜଣକ ପାଇଁ' କଟକ କ୍ଳବ୍‌ରେ ଅଭିନୀତ ହୋଇଥିଲା – ଅନନ୍ତ ମହାପାତ୍ରଙ୍କ ଉତ୍ସାହରେ । ଜଗନ୍ନାଥ ପ୍ରସାଦ ନିଜେ ଏଥିରେ ଅଭିନୟ କରିଥିଲେ ମଧ୍ୟ । ଅନ୍ୟ ଅଭିନେତା-ଅଭିନେତ୍ରୀମାନଙ୍କ ମଧ୍ୟରେ ଥିଲେ ଅନନ୍ତ ମହାପାତ୍ର, ଅନନ୍ତ ପ୍ରସାଦ ମହାନ୍ତି, ମିତ୍ରା ଦାସ (ଜଗନ୍ନାଥ ପ୍ରସାଦଙ୍କ ପତ୍ନୀ), ଜୁଲି ମିଶ୍ର ଏବଂ ସୁବ୍ରମଣ୍ୟମ୍ । ସୁବ୍ରମଣ୍ୟମ୍ ଥିଲେ କୌଣସି କମ୍ପାନୀର ଅଫିସର୍ । ସେ ଓଡ଼ିଆ ଜାଣି ନ ଥିଲେ । ତେଣୁ ତାଙ୍କୁ ବେହେରା ଭୂମିକାରେ ଅଭିନୟ କରିବାକୁ ପଡ଼ିଥିଲା । ଅଭିନୟ ସମୟରେ ତାଙ୍କୁ ଗୋଟିଏ ମାତ୍ର ଓଡ଼ିଆ ଶବ୍ଦ କହିବାକୁ ପଡ଼ିଥିଲା – 'ଆଜ୍ଞା' ।

ଯେଉଁମାନେ ନାଟକ ଲେଖନ୍ତି, ସେମାନେ ନାଟକର ନିର୍ଦ୍ଦେଶନା ଦେବା କିମ୍ବା ସେଥିରେ ଅଭିନୟ କରିବାର ପରଂପରା ଓଡ଼ିଶାରେ ଦୃଢ଼ ନୁହେଁ । ତେବେ ପ୍ରଥମ ଓଡ଼ିଆ ନାଟ୍ୟକାର ତଥା 'ବାବାଜୀ' ନାଟକର ଲେଖକ ଜଗନ୍ମୋହନ ଲାଲା ତାଙ୍କର ମାହାଙ୍ଗାସ୍ଥିତ ରାଧାକାନ୍ତ ରଙ୍ଗମଞ୍ଚରେ ତାଙ୍କ ପରିବାରର ସଭ୍ୟ-ସଭ୍ୟାମାନଙ୍କୁ ନିଜ ନାଟକରେ ଅଭିନେତା-ଅଭିନେତ୍ରୀ ଭୂମିକାରେ ଅବତୀର୍ଣ୍ଣ କରାଇଥିଲେ । ବୈଷ୍ଣବ ପାଣି ତ ଥିଲେ ଏକାଧାରରେ ନାଟ୍ୟକାର, ସଙ୍ଗୀତ ରଚୟିତା, ନିର୍ଦ୍ଦେଶକ ଓ ଅଭିନେତା । ସେହିପରି ଥିଲେ କାଳୀଚରଣ ପଟ୍ଟନାୟକ । ଜଗନ୍ନାଥ ପ୍ରସାଦ ଏମାନଙ୍କ ଭଳି ନାଟ୍ୟ ଜଗତ ସହିତ ଦୀର୍ଘକାଳ ବ୍ୟାପି ଜଡ଼ିତ ରହି ନାହାନ୍ତି ଅବଶ୍ୟ, କିନ୍ତୁ ନାଟକ ରଚନା ସହିତ ଅଭିନୟ ଓ ମଞ୍ଚସଜ୍ଜାରେ ମଧ୍ୟ ଥିଲା ତାଙ୍କର ରୁଚି ଓ ଆଗ୍ରହ । ମନୋରଞ୍ଜନ ଦାସଙ୍କ ଐତିହାସିକ ନାଟକ 'ବନ୍ଧି ଜଗବନ୍ଧୁ'ରେ ସେ ଫତେ ମହମ୍ମଦ ଭୂମିକାରେ ଅଭିନୟ କରିଥିଲେ । ସେତେବେଳେ ସେ ହୁଏତ କଳ୍ପନା କରି ନ ଥିଲେ—ପ୍ରାୟ କୋଡ଼ିଏ ବର୍ଷ ପରେ ତାଙ୍କର ଉପନ୍ୟାସ 'ଦେଶ କାଳ ପାତ୍ର'ରେ ଫତେ ମହମ୍ମଦ ହେବ ଏକ ଆକର୍ଷଣୀୟ ଚରିତ୍ର ।

'ବନ୍ଧି ଜଗବନ୍ଧୁ' ନାଟକରେ ଫତେ ମହମ୍ମଦ ଭୂମିକାରେ, ନୂଆଦିଲ୍ଲୀ, ୧୯୭୮



**Oriya play**

NEW DELHI, Oct. 14 (PTI)— The Oriya Samaj of Delhi today presented "Buxi Jagabandhu", a historical play, as part of the Kumar Utsav celebrations.

The play, based on the book by Mr Manoranjan Das, portrayed the fiery life of Buxi Jagabandhu who led the revolt against the British rule in Orissa in 1817.

The play, directed by Mr Jatin Das, included J. P. Dass, Shyam Mahapatra and Nirupama Tripathi in the cast.

A Kumar Purnima dance was staged before the start of the play.

ଟାଇମ୍‌ସ୍ ଅଫ୍ ଇଣ୍ଡିଆ, ନୂଆଦିଲ୍ଲୀ
ଅକ୍ଟୋବର ୧୪, ୧୯୭୮

ନାଟକ ରଚନା ବା ଅଭିନୟ କରିବା ବ୍ୟତୀତ କଟକରେ ସେ ସମୟରେ ନାଟକ ମଞ୍ଚସ୍ଥ କରିବାରେ ସେ ଉତ୍ସାହ ପ୍ରକାଶ କରୁଥିଲେ । ଓଡ଼ିଶାର ଅନ୍ୟତମ ପ୍ରମୁଖ ନାଟ୍ୟକାର ମନୋରଞ୍ଜନ ଦାସ ତାଙ୍କ ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି :

'(୧୯୭୨ରେ 'ଅମୃତସ୍ୟ ପୁତ୍ର') ରିହଲ୍‌ସଲ୍ ସମୟରେ 'ସୃଜନୀ'ର କିଛି ବଂଧୁ ବହୁତ ରାତି ପର୍ଯ୍ୟନ୍ତ ଉପସ୍ଥିତ ରହି ଆମକୁ ଉତ୍ସାହିତ କରୁଥିଲେ । ଏଇ ପ୍ରିୟଜନମାନଙ୍କ ଭିତରେ ଦୁଇଜଣଙ୍କ କଥା ବିଶେଷଭାବରେ ମନେ ପଡୁଥିଲା । ଜଣେ ହେଲେ ଜେ. ପି.ଦାସ... ସେ ଦିନର ତରୁଣ ଆଇ.ଏ.ଏସ୍. ଅଫିସର ଆଉ ପରବର୍ତ୍ତୀ କାଳର ପ୍ରଖ୍ୟାତ କବି, ନାଟ୍ୟକାର ଓ ଚିତ୍ରଶିଳ୍ପୀ ଜଗନ୍ନାଥ ପ୍ରସାଦ ଦାସ । ଅନ୍ୟ ଜଣକ ହେଲେ ଓଡ଼ିଶାର ଲବ୍‌ଧପ୍ରତିଷ୍ଠ ସର୍ଜନ୍ ଡାକ୍ତର ମଧୁସୂଦନ ଖାଡ଼ଙ୍ଗା ।'

(ସ୍ମୃତିସଂଳାପ)

ପ୍ରକାଶ ସମୟକ୍ରମରେ ଜଗନ୍ନାଥ ପ୍ରସାଦଙ୍କ ନାଟକଗୁଡିକ ହେଲା, 'ସୂର୍ଯ୍ୟାସ୍ତ ପୂର୍ବରୁ' (୧୯୭୦), 'ସବା ଶେଷ ଲୋକ' (୧୯୭୮), 'ଅସଙ୍ଗତ ନାଟକ' (୧୯୮୧), 'ପୂର୍ବରାଗ' (୧୯୮୫), 'ସୁନ୍ଦରଦାସ' (୧୯୯୪) । ଏହାପରେ ତାଙ୍କର ଅନ୍ୟ କୌଣସି ନାଟକ ପ୍ରକାଶିତ ହୋଇ ନାହିଁ ।

ସଂଖ୍ୟା ବା ପରିମାଣ ଦୃଷ୍ଟିରୁ ଜଗନ୍ନାଥ ପ୍ରସାଦଙ୍କ ନାଟକ ପର୍ଯ୍ୟାପ୍ତ ନୁହେଁ । 'ପୂର୍ବରାଗ' ଦୁଇଟି ଏକାଙ୍କିକାର ସଂକଳନ – 'ଜଣେ ଜଣକ ପାଇଁ' ଏବଂ 'ଆକସ୍ମିକ' । ଅନ୍ୟ ଭାବରେ କହିଲେ – ଜଗନ୍ନାଥ ପ୍ରସାଦଙ୍କ ରଚିତ ପୂର୍ଣ୍ଣାଙ୍ଗ ନାଟକର ସଂଖ୍ୟା ଚାରି । ତାଙ୍କ ଲିଖିତ / ପ୍ରସାରିତ ବେତାର ନାଟକଗୁଡ଼ିକ ସୁଲଭ ନ ଥିବାରୁ ତାହା ସଂପର୍କରେ ଉଲ୍ଲେଖ କରାଯାଇପାରୁ ନାହିଁ ।

ଜଗନ୍ନାଥ ପ୍ରସାଦଙ୍କ ସମସାମୟିକ ନାଟ୍ୟକାରମାନଙ୍କ ସଂପର୍କରେ କୌଣସି ଆଲୋଚନା କରିବା ପୂର୍ବରୁ ସାଂପ୍ରତିକ ଓଡ଼ିଆ ନାଟକ ତଥା ନାଟ୍ୟକଳା ବିଷୟରେ କିଛିଟା ମନ୍ତବ୍ୟ ପ୍ରଦାନ ଆବଶ୍ୟକ ମନେହୁଏ । ଓଡ଼ିଶାରେ ଆଧୁନିକ ନାଟକ/ ଅଭିନୟର ପରଂପରା ଗଢ଼ିଆସିଛି ଊନବିଂଶ ଶତାବ୍ଦୀର ସପ୍ତମ ଦଶକରୁ– ଜଗନ୍‌ମୋହନ ଲାଲାଙ୍କ 'ବାବାଜୀ' ନାଟକର ପରିବେଷଣ ସମୟରୁ (୧୮୭୭) । ସୁଆଙ୍ଗ, ଗୀତିନାଟ୍ୟ – ଏସବୁର ପ୍ରଚଳନ ଅବଶ୍ୟ ବହୁ ପୂର୍ବରୁ ରହିଥିଲା । ତେବେ, ମୋହନସୁନ୍ଦର ଦେବଗୋସ୍ୱାମୀ ପାରଂପରିକ ରାସଲୀଳାକୁ କେତେକାଂଶରେ ଆଧୁନିକ କରିଥିଲେ । କାଳୀଚରଣ ପଟ୍ଟନାୟକଙ୍କ ଓଡ଼ିଶା ଥିଏଟର୍ସଠାରୁ ଆରମ୍ଭ କରି ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚ (ଏ ଗ୍ରୁପ୍ ଓ ବି ଗ୍ରୁପ୍), ଜନତା ରଙ୍ଗମଞ୍ଚ ପ୍ରଭୃତି ପେଶାଦାର ନାଟ୍ୟସଂସ୍ଥାମାନେ ନିୟମିତ ପୌରାଣିକ ଓ ସାମାଜିକ ନାଟକ ପରିବେଷଣ କରୁଥିଲେ ବିଂଶ ଶତାବ୍ଦୀର ପଞ୍ଚମ-ଷଷ୍ଠ ଦଶକ ଯାଏଁ । ବୈଷ୍ଣବ ପାଣି ନିଜ ନାଟ୍ୟଦଳ ଗଢ଼ି ସ୍ୱରଚିତ ଗୀତିନାଟ୍ୟମାନ ଓଡ଼ିଶା ଓ ଓଡ଼ିଶା ବାହାରେ ମଞ୍ଚସ୍ଥ କରୁଥିଲେ । ଅଶ୍ୱିନୀ କୁମାର ଘୋଷ, କାଳୀଚରଣ ପଟ୍ଟନାୟକ, ଗୋପାଳ ଛୋଟରାୟ, କାର୍ତ୍ତିକ ଚନ୍ଦ୍ର ଘୋଷ, ରାମଚନ୍ଦ୍ର ମିଶ୍ର, ଭଞ୍ଜକିଶୋର ପଟ୍ଟନାୟକ, ମନୋରଞ୍ଜନ ଦାସ ପ୍ରମୁଖଙ୍କ ନାଟକସବୁ ପେଶାଦାର ରଙ୍ଗମଞ୍ଚମାନଙ୍କରେ ମଞ୍ଚସ୍ଥ

ହୋଇଥିଲା । ଦର୍ଶକମାନେ ଟିକେଟ୍ ଖରିଦ୍ କରି ନାଟକ ଦେଖୁଥିଲେ; କଳାକାରମାନେ ଅଭିନୟ କରି ନିଜ ଗୁଜରାଣ ମେଣ୍ଟାଇବାରେ ସକ୍ଷମ ହେଉଥିଲେ । ପେଶାଦାର ରଙ୍ଗମଞ୍ଚକୁ ବାଦ୍‌ଦେଲେ ପ୍ରାୟ ପ୍ରତି ମହାବିଦ୍ୟାଳୟରେ ନାଟ୍ୟ ସଂସଦ ଆନୁକୂଲ୍ୟରେ ପ୍ରତିବର୍ଷ ଏକ ବା ଏକାଧିକ ପୂର୍ଣ୍ଣାଙ୍ଗ ନାଟକ ଛାତ୍ରଛାତ୍ରୀମାନଙ୍କ ଦ୍ଵାରା ମଞ୍ଚସ୍ଥ ହେଉଥିଲା । ନାଟକ ମଞ୍ଚସ୍ଥ ହେବା ପ୍ରତି ମହାବିଦ୍ୟାଳୟର ଥିଲା ଏକ ଗୁରୁତ୍ଵପୂର୍ଣ୍ଣ କାର୍ଯ୍ୟକ୍ରମ । ଶହ ଶହ ଛାତ୍ରଛାତ୍ରୀ ଓ ସାଧାରଣ ଜନତା ଏହା ଉପଭୋଗ କରୁଥିଲେ । ଉଦାହରଣସ୍ଵରୂପ, ପୁରୀ କଲେଜରେ ୧୯୫୬–୬୦ ମଧ୍ୟରେ ବେଶ୍ କେତୋଟି ପୂର୍ଣ୍ଣାଙ୍ଗ ନାଟକ ଓ ଏକାଙ୍କିକା ମଞ୍ଚସ୍ଥ ହୋଇଥିଲା । କବି ଓ ନାଟ୍ୟକାର ହରିହର ମିଶ୍ର ସେ ସମୟରେ ପୁରୀ କଲେଜର ଛାତ୍ର ଥିଲେ । ସେ ନିଜେ ଚାରୋଟି ନାଟକ ଓ ଗୋଟିଏ ଏକାଙ୍କିକାର ପରିବେଷଣ ସହିତ ସଂପୃକ୍ତ ଥିଲେ । ଏଭଳି ନାଟକ ପରିବେଷଣରେ ଅଧ୍ୟାପକମାନଙ୍କର ସକ୍ରିୟ ଭୂମିକା ଥିଲା । ପୁରୀ କଲେଜର ଅଧ୍ୟାପକ ରାଜକିଶୋର ରାୟ ବିଭିନ୍ନ ନାଟକର ନିର୍ଦ୍ଦେଶନା ଦେବା ସହିତ ନିଜେ ଅଭିନୟ କରୁଥିଲେ । 'ବନ୍ଦି ଜଗବନ୍ଧୁ' ନାଟକରେ ନିଜେ ରାଜକିଶୋର ରାୟ ଫ୍ରେଜର୍ ସାହେବ ଭୂମିକାରେ ଚମତ୍କାର ଅଭିନୟ କରିଥିବା ମୋର ସ୍ମରଣ ଅଛି ।

କେବଳ ସେତିକି ନୁହେଁ, ୧୯୫୦–୬୨ ମଧ୍ୟରେ ମୁଁ ସାକ୍ଷିଗୋପାଳ ନିକଟସ୍ଥ ମୋ ମାମୁଁ ଗାଁ'ରେ ଗ୍ରୀଷ୍ମ ଛୁଟି କଟାଇବା ଅବସରରେ ଲକ୍ଷ୍ୟ କରିଥିଲି, ସେତେବେଳେ ବିଭିନ୍ନ ଗ୍ରାମରେ ତରୁଣମାନେ ପୂର୍ଣ୍ଣାଙ୍ଗ ନାଟକମାନ ମଞ୍ଚସ୍ଥ କରୁଥିଲେ । 'ଭରସା', 'ଚକ୍ରୀ' ଭଳି ନାଟକ ଜନପ୍ରିୟ ଥିଲା । ମୋଟ ଉପରେ ବିଂଶ ଶତାବ୍ଦୀର ପ୍ରଥମ ଭାଗ ବା ତହିଁରୁ ଅଧିକ ସମୟର ସାଂସ୍କୃତିକ ପରିବେଶରେ ନାଟକ ପରିବେଷଣର ଏକ ଗୁରୁତ୍ଵପୂର୍ଣ୍ଣ ଭୂମିକା ଥିଲା ।

ସପ୍ତମ–ଅଷ୍ଟମ ଦଶକଠାରୁ ଓଡ଼ିଶାରେ ପେଶାଦାର ରଙ୍ଗମଞ୍ଚର ଅବକ୍ଷୟ ଘଟିଲା । ସିନେମା, ଟେଲିଭିଜନ୍ ବା ଅନ୍ୟ ଯେଉଁ କାରଣରୁ ହେଉ ନା କାହିଁକି, ନାଟକ ମଞ୍ଚସ୍ଥ ହେବାର ପରଂପରା ଦୁର୍ବଳ ହେଲା । ନାଟକର ସ୍ଥାନ ଅଧିକାଂଶରେ ଦଖଲ କରିନେଲା ମେଲୋଡ଼ି, ଯାତ୍ରା ଓ ଅନ୍ୟାନ୍ୟ ମନୋରଂଜନ କାର୍ଯ୍ୟକ୍ରମ । ଉଲ୍ଲେଖ କରିବା ଯଥାର୍ଥ ମନେହୁଏ, ଯାତ୍ରାରେ ଗୋପାଳ ଛୋଟରାୟ ବା ମନୋରଞ୍ଜନ ଦାସଙ୍କ ସାମାଜିକ ବା ଐତିହାସିକ ନାଟକର କଳାତ୍ମକ ଉତ୍କର୍ଷ ପ୍ରାୟ ସୁରକ୍ଷିତ ହେଲା ନାହିଁ; ଏହା ଶସ୍ତା ମନୋରଂଜନର ମାଧ୍ୟମରେ ପରିଣତ ହେଲା । ଯଦିଓ ଯାତ୍ରା ବ୍ୟାପକ ଅର୍ଥରେ ନାଟକ ପରିସରରେ ଅନ୍ତର୍ଭୁକ୍ତ, ଏ ଆଲୋଚନାରେ ଏହାକୁ ଏକ ସ୍ଵତନ୍ତ୍ର ଫର୍ମ୍ ଭାବରେ ବିଚାର କରାଯାଇଛି ।

**Dishantar**

presents an Oriya play
by J. P. Das
Translated into Hindi by Kanti Deb
Directed by Ram Gopal Bajaj

# Suryastak

पात्र / cast

| | |
|---|---|
| दीपंकर / Deepanker | ओम पुरी / Om Puri |
| संजय / Sanjay | सुदेश स्याल / Sudesh Syal |
| शीला / Sheela | . वेद सिन्हा / Ved Sinha |
| सरोज / Saroj | . माला मेहरोत्रा / Mala Mehrotra |

निर्देशन राम गोपाल
Direction Ram Gopal

| | |
|---|---|
| मंच / Stage | सुदेश स्याल / Sudesh Syal |
| प्रकाश योजना / Lighting | . आर० के० ढींगरा / R.K. Dhingra |
| वेश / Costumes | . . . . वेद सिन्हा / Ved Sinha |
| संगीत चयन / Music Selected by | . . कौशल / Kaushal |
| प्रस्तुति नियन्त्रण / Production | . . बी० पी० सिन्हा / B.P. Sinha |



ସୂର୍ଯ୍ୟାସ୍ତ ପୂର୍ବରୁ (ହିନ୍ଦୀ), ନୂଆଦିଲ୍ଲୀ , ମାଲା, ଓମ୍ ପୁରୀ, ବେଦ ସିହ୍ନା, ୧୯୭୬

୧୯୭୭ରେ ଜଗନ୍ନାଥ ପ୍ରସାଦଙ୍କ 'ସୂର୍ଯ୍ୟାସ୍ତ ପୂର୍ବରୁ' ପ୍ରକାଶିତ ହେଲାବେଳକୁ ଓଡ଼ିଶାରେ ପେଶାଦାର ରଙ୍ଗମଞ୍ଚ ମୃତପ୍ରାୟ; ମହାବିଦ୍ୟାଳୟ ତଥା ପଲ୍ଲୀ ଅଞ୍ଚଳରେ ନାଟକ ପରିବେଷଣ ଧାରା କ୍ଷୀଣ । କେବଳ ଜଗନ୍ନାଥ ପ୍ରସାଦ ନୁହନ୍ତି, ସପ୍ତମ ଦଶକ ପରେ ଯେଉଁମାନେ ନାଟକ ରଚନାରେ ମନୋନିବେଶ କଲେ, ସେମାନଙ୍କ ଆଗରେ ଏକମାତ୍ର ବିକଳ୍ପ ରହିଲା– ସୌଖୀନ୍ ବା ଆମାଚର୍ ନାଟ୍ୟସଂସ୍ଥା ମାଧ୍ୟମରେ ନାଟକ ପରିବେଷଣ କରିବା ।

୧୯୭୭ରେ ପ୍ରକାଶିତ ହୋଇଥିଲେ ହେଁ 'ସୂର୍ଯ୍ୟାସ୍ତ ପୂର୍ବରୁ' ଲିଖିତ ହୋଇଥିଲା ୧୯୭୨ରେ ଏବଂ ବିଶେଷ ଉଲ୍ଲେଖଯୋଗ୍ୟ, ସେହି ୧୯୭୨ରେ ଏହାର ବଙ୍ଗଳା ଅନୁବାଦ 'ସୂର୍ଯ୍ୟାସ୍ତେର୍ ଆଗେ' କୋଲ୍‌କାତାର ଥିଏଟର୍ ଗିଲ୍‌ଡ୍ ଦ୍ୱାରା ମଞ୍ଚସ୍ଥ ହୋଇଥିଲା । ନିର୍ଦ୍ଦେଶନା ଦେଇଥିଲେ ଶ୍ୟାମଳ ସେନ୍; ଅଭିନୟ କରିଥିଲେ ସମୀର ଲାହିଡି, ଦ୍ୱିଜୁ ଭଓ୍ୱାଲ୍, ମଞ୍ଜୁ ବ୍ରହ୍ମଚାରୀ, ଚିତ୍ରା ସେନ୍ । ୧୯୭୬ରେ ଏହାର ହିନ୍ଦୀ ଅନୁବାଦ 'ସୂର୍ଯ୍ୟାସ୍ତକ୍'ର ପରିବେଷଣ କରିଥିଲେ ଦିଲ୍ଲୀର ନାଟ୍ୟସଂସ୍ଥା ଦିଶାନ୍ତର; ନିର୍ଦ୍ଦେଶକ ଥିଲେ ରାମ୍ ଗୋପାଲ୍ ବଜାଜ୍; କଳାକାର – ଓମ୍ ପୁରୀ, ବେଦ ସିହ୍ନା, ମାଲା ମେହେରୋତ୍ରା, ସ୍ୱଦେଶ ସୟାଲ୍ । ୧୯୭୯ରେ ପଞ୍ଜାବୀ ଭାଷାରେ ଚଣ୍ଡୀଗଡ଼ରେ ଏହା ମଞ୍ଚସ୍ଥ ହୋଇଥିଲା । ମୂଳ ଓଡ଼ିଆରେ ଏହା ଅଭିନୀତ ହେଲା ୧୯୭୭ ଜୁଲାଇରେ ଇଣ୍ଟରନ୍ୟାସନାଲ୍ ଥିଏଟର୍‌ଦ୍ୱାରା । ନିର୍ଦ୍ଦେଶକ - ଗୋବିନ୍ଦ ଗୁପ୍ତା; କଳାକାର – ଦୀନେଶ ରାଉତ, ଜୟନ୍ତ ଦାସ, ଗୀତାରାଣୀ ଓ ବିଷ୍ଣୁପ୍ରିୟା । ନାଟକଟି କନଡ଼ରେ ଅନୂଦିତ ହେଲା ୧୯୮୦ରେ; ଗୁଜରାଟୀରେ ବମ୍ବେ ଆକାଶବାଣୀରେ ମଧ୍ୟ ପ୍ରସାରିତ ହେଲା ।



THEATRE—'79

presents

J. P. Das's

SUBH TON HETHLA AADAMI

(UNDERDOG)

( A Panjabi Version of Oriya Play )

Direction _ WARYAM MAST

Translation : Vats Madan Mohan

at Tagore Theatre, Chandigarh

on 2nd August 1982

at 7-00 P.M. (Sharp)

'ସୂର୍ଯ୍ୟାସ୍ତ ପୂର୍ବରୁ'ର ସର୍ବଭାରତୀୟ ସଫଳତା କେବଳ ଜଗନ୍ନାଥ ପ୍ରସାଦଙ୍କର ନୁହେଁ, ନୂତନ ଓଡ଼ିଆ ନାଟକ ଓ ନାଟ୍ୟ ଆନ୍ଦୋଳନର ବୋଲି କୁହାଯାଇପାରେ । ଏହା ପୂର୍ବରୁ ଅନ୍ୟ କୌଣସି ଓଡ଼ିଆ ନାଟକ ଏଭଳି ସଫଳତା ଲାଭ କରିଥିବା ମନେ ହୁଏ ନାହିଁ । ଏଠାରେ କୋଲ୍‌କାତାରୁ ପ୍ରକାଶିତ 'ହିନ୍ଦୁସ୍ତାନ୍ ଷ୍ଟାଣ୍ଡାର୍ଡ୍' (ଜୁନ୍ ୨୭, ୧୯୭୨)ର ରିଭ୍ୟୁଟିର କିୟଦଂଶ ଦେଖନ୍ତୁ :

'କଲିକତାର ରଙ୍ଗମଞ୍ଚ ଭାରତର ବିଭିନ୍ନ ଭାଷାରେ ଲିଖିତ ଉତ୍ତମାନର ନାଟକ ମଞ୍ଚସ୍ଥ କରିବା ଏକ ଶୁଭ ସୂଚନା । ଆମେ ନିକଟ ଅତୀତରେ ଏହିପରି ଦୁଇଟି ପରୀକ୍ଷାଧର୍ମୀ ସଫଳ

ନାଟକ ଦେଖିବାକୁ ପାଇଲୁ : ମରାଠୀ ନାଟକ 'ଚୋପ୍, ଆଦାଲତ୍ ଚୋଲ୍‌ଛେ' ଏବଂ ଓଡ଼ିଆ ନାଟକ 'ସୂର୍ଯ୍ୟାସ୍ତେର୍ ଆଗେ' । ଦ୍ୱିତୀୟ ନାଟକଟି ରଚନା କରିଛନ୍ତି ତରୁଣ କବି, ଚିତ୍ରଶିଳ୍ପୀ, ନାଟ୍ୟକାର ଜଗନ୍ନାଥ ପ୍ରସାଦ ଦାସ । ଏହା ମଞ୍ଚସ୍ଥ କରିଥିଲେ ଥିଏଟର୍ ଗିଲ୍‌ଡ୍ । ଉଲ୍ଲେଖ କରାଯାଇପାରେ, କଲିକତାରେ ମଞ୍ଚସ୍ଥ ହେବାରେ ଏହା ପ୍ରଥମ ଓଡ଼ିଆ ନାଟକ । ମୂଳ ଓଡ଼ିଆରେ ମଞ୍ଚସ୍ଥ ହେବା ପୂର୍ବରୁ ଏହାର ଅନୁବାଦ ବଙ୍ଗଳାରେ ମଞ୍ଚସ୍ଥ ହୋଇଛି ।'



ରାମ ଗୋପାଲ୍ ବଜାଜଙ୍କ ସହ, ୨୦୦୧

'ସବୁ ଶେଷ ଲୋକ' ପ୍ରକାଶିତ ହେଲା ୧୯୭୮ରେ । ବୁଦ୍ଧିଜୀବୀ ଗୋଷ୍ଠୀର ହୀନମନ୍ୟତା ତଥା ରାଜନୀତିକ ନେତାମାନଙ୍କ ଅହମିକା ଏହାର ମୁଖ୍ୟ ବିଷୟବସ୍ତୁ । ଚରିତ୍ରମାନଙ୍କ ସଂଖ୍ୟା ପାଞ୍ଚ । ଦିଲ୍ଲୀରେ ୧୯୭୮ରେ ଏହା ହିନ୍ଦୀରେ ମଞ୍ଚସ୍ଥ ହୋଇଥିଲା ୧୯୮୦ରେ ଓଡ଼ିଆରେ ମଞ୍ଚସ୍ଥ ହେବା ପୂର୍ବରୁ । ଏ ନାଟକର ହିନ୍ଦୀ ଅନୁବାଦ ମଞ୍ଚସ୍ଥ ହେବା ସଂପର୍କରେ ରିଭ୍ୟୁଟିଏ କରିଛନ୍ତି ଜେ.ଏନ୍. କୌଶଲ୍ (ଏନାକ୍ଟ୍,୧୯୭୭) :

'ଏ ନାଟକରେ ଦାସ୍‌ଙ୍କର ଚରିତ୍ରଚିତ୍ରଣ ସୂଚନାଧର୍ମୀ । ତାଙ୍କର ସମାଲୋଚନା ସୂକ୍ଷ୍ମ, କାହାକୁ ଆଘାତ ଦିଏ ନାହିଁ । ଦର୍ଶକମାନଙ୍କୁ ସେ ନିଜ ନିଜ କଳ୍ପନାରେ ନାଟକଟିର ଅର୍ଥ ବୁଝିବାକୁ ଛାଡ଼ି ଦିଅନ୍ତି । ଜଣେ କବି ଆଙ୍ଗିକ ପ୍ରୟୋଗ କଲାଭଳି ସ୍ୱଚ୍ଛ ଶବ୍ଦ ମଧ୍ୟରେ ସେ ଅନେକ ବକ୍ତବ୍ୟ ରଖିପାରନ୍ତି... ।'

ସୂର୍ଯ୍ୟାସ୍ତ ପୂର୍ବରୁ (ବଙ୍ଗଳା), କଳାମନ୍ଦିର ମଞ୍ଚ, କଲିକତା, ୧୯୭୨, ନିର୍ଦ୍ଦେଶକ ଶ୍ୟାମଳ ସେନ୍ ଓ କଳାକାରମାନଙ୍କ ସହିତ



'ସୂର୍ଯ୍ୟାସ୍ତ ପୂର୍ବରୁ' ଓ 'ସବୁ ଶେଷ ଲୋକ' ପରେ ପ୍ରକାଶିତ 'ଅସଙ୍ଗତ ନାଟକ' ବା 'ପୂର୍ବରାଗ' ଦର୍ଶକମାନଙ୍କ ମଧ୍ୟରେ ବିଶେଷ ପରିଚିତ ହୋଇପାରିଲା ନାହିଁ । ଧୀର ମଲ୍ଲିକଙ୍କ ନିର୍ଦ୍ଦେଶନାରେ 'ଅସଂଗତ ନାଟକ' ଭୁବନେଶ୍ୱରରେ ମଞ୍ଚସ୍ଥ ହୋଇଥିଲା ।

ଜଗନ୍ନାଥ ପ୍ରସାଦଙ୍କ ଶେଷ ନାଟକ 'ସୁନ୍ଦର ଦାସ' ଓଡ଼ିଆ ନାଟ୍ୟ ସାହିତ୍ୟରେ ଏକ ମୂଲ୍ୟବାନ ସଂଯୋଜନ । କିନ୍ତୁ ଏଯାବତ୍ ଏ ନାଟକ ପ୍ରତି ଯଥୋଚିତ ଗୁରୁତ୍ୱ ପ୍ରଦାନ କରାଯାଇଛି ବୋଲି ମନେହୁଏ ନାହିଁ । ଏଥିରେ ପାତ୍ରପାତ୍ରୀ ସଂଖ୍ୟା ତିରିଶି । ଏହାର ମୁଖ୍ୟ ଚରିତ୍ରମାନେ ହେଲେ ସାଧୁ ସୁନ୍ଦର ଦାସ, ପାଦ୍ରୀ ଲେସି, ସଟନ୍, ବ୍ୟାମ୍ପଟନ୍ ପ୍ରମୁଖ । ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ ଓଡ଼ିଶାରେ ମିଶନାରୀମାନଙ୍କ ଧର୍ମାନ୍ତରୀକରଣର ଉଦ୍ୟମ ଓ ହିନ୍ଦୁ ସମାଜର ପ୍ରତିକ୍ରିୟା ଏ ନାଟକର ବିଷୟବସ୍ତୁ । ଏହାର ଇଂରାଜୀ ଅନୁବାଦ କରିଛନ୍ତି କାନାଡ଼ାର ମଣ୍ଟ୍ରିୟଲ୍ ବିଶ୍ୱବିଦ୍ୟାଳୟର ଅନୁବାଦ ବିଭାଗର ପ୍ରଫେସର ପଲ୍ ସେଣ୍ଟ୍ ପିୟର, ଲୀଳାବତୀ ମହାପାତ୍ର ଏବଂ କମଳାକାନ୍ତ ମହାପାତ୍ର । ଗ୍ରନ୍ଥର ମୁଖବନ୍ଧରେ ପ୍ରଫେସର୍ ସେଣ୍ଟ୍ ପିୟର ଲେଖିଛନ୍ତି :

'ଧର୍ମାନ୍ତରୀକରଣର ସମସ୍ୟା ଓ ଜଟିଳତା ଏହି ନାଟକର ବିଷୟବସ୍ତୁ । କାରଣ ଧର୍ମାନ୍ତରୀକରଣ ଫଳରେ ଅତୀତକୁ ପରିତ୍ୟାଗ କରିବାକୁ ହୁଏ, ନୂତନ ପରିଚୟ ଗ୍ରହଣ କରିବାକୁ ହୁଏ ।' (ଗ୍ରାସ୍ ରୁଟ୍ସ, ୨୦୦୪)

YAVANIKA

PLAYS OF THE DECADE SERIES

A new play by Sh. J. P. Das

Sabse Neeche Ka Aadmi

Five out of the millions

ଇଣ୍ଡିଆନ୍ ଲିଟରେଚର୍ (ମାର୍ଚ୍ଚ-ଏପ୍ରିଲ୍, ୨୦୦୪)ରେ ଏକ ରିଭ୍ୟୁରେ ସମାଲୋଚକ ଏଚ୍.ଏସ୍. ଶିବପ୍ରକାଶ ମତ ଦିଅନ୍ତି, 'ନାଟକ ସୁନ୍ଦର ଦାସ ଭାରତୀୟ ନାଟ୍ୟସାହିତ୍ୟକୁ ଏକ ବିଶେଷ ଅବଦାନ । ଧର୍ମାନ୍ତରୀକରଣ ରାଜନୀତିର ଏହା ଏକ ଅନ୍ତର୍ଦୃଷ୍ଟିସଂପନ୍ନ ବିଶ୍ଳେଷଣ ।'

ଵଡା ଶେଷ ଭୋଜ ନାଟକରେ ଅସୀମ ବସୁ

୨୦୦୭ରେ ଜବାହର୍‌ଲାଲ୍ ନେହେରୁ ବିଶ୍ୱବିଦ୍ୟାଳୟର ସ୍କୁଲ୍ ଅଫ୍ ଆର୍ଟ୍ସ ଏଣ୍ଡ୍ ଏସ୍ଥେଟିକ୍ସ୍ ଆନୁକୂଲ୍ୟରେ ଦୁଇଟି ଆଧୁନିକ ଭାରତୀୟ ନାଟକ ମଞ୍ଚସ୍ଥ କରାଯାଇଥିଲା । ସେଥିମଧ୍ୟରୁ ଗୋଟିଏ ଥିଲା 'ସୁନ୍ଦର ଦାସ', ଅନ୍ୟଟି





**Oriya Cultural Association**
*in collaboration with*
**Indira Gandhi National Centre for the Arts**
*presents*



# SUNDARDAS

**J.P.Das's Oriya play in English translation**

***Produced by* The School of Art and Aesthetics, Jawaharlal Nehru University**

***Directed by* Prof. H.S.Shiva Prakash**

at the Amphitheatre, IGNCA
Central Vista Mess, Janpath, New Delhi, 110 001
on Sunday, March 16, 2008 at 06.30 pm

You are cordially invited to attend with family and friends

RSVP: Gyan Asis, Tel. 99101 10925, email: gyanesis@gmail.com
OCA, 185 (SF), Indraprastha Colony, Sec-30-33, Faridabad, 121003

ଥିଲା ମରାଠୀ ନାଟ୍ୟକାର ବିଜୟ ତେନ୍ଦୁଲ୍‌କର୍‌ଙ୍କର 'ଛାତ ହୀ ପୁଛୋ ସାଧୁ କୀ' । 'ସୁନ୍ଦର ଦାସ' ନାଟକର ନିର୍ଦ୍ଦେଶନା ଦେଇଥିଲେ ଏଚ୍.ଏସ୍. ଶିବପ୍ରକାଶ । ବିଗତ କେତେବର୍ଷ ମଧ୍ୟରେ ଓଡ଼ିଶା ତଥା ଭାରତରେ ଧର୍ମାନ୍ତରୀକରଣକୁ କେନ୍ଦ୍ରକରି ଚାଲିଥିବା ବିବାଦ ପରିପ୍ରେକ୍ଷୀରେ ଏ ନାଟକର ପ୍ରାସଙ୍ଗିକତା ନିଃସନ୍ଦେହ ।

୧୯୯୪ ପରେ ଜଗନ୍ନାଥ ପ୍ରସାଦ ବୋଧହୁଏ କୌଣସି ନୂତନ ନାଟକ ଲେଖି ନାହାନ୍ତି । କିନ୍ତୁ ରଙ୍ଗମଞ୍ଚ ସହିତ ତାଙ୍କର ସଂପର୍କ ଅତୁଟ ରହିଛି । ଏ ପ୍ରସଙ୍ଗରେ ଓଡ଼ିଆ ରଙ୍ଗମଞ୍ଚର ଅନ୍ୟତମ ସାର୍ଥକ ନିର୍ଦ୍ଦେଶକ ଅସୀମ ବସୁଙ୍କର ସ୍ମୃତିଚାରଣ ପ୍ରାସଙ୍ଗିକ ମନେହୁଏ :

'ଜେ.ପି. ଦାସ - ଜଣେ ନାଟ୍ୟକାର । ଆଜି ଆଉ ମନେ ପଡୁନି ମୁଁ ପ୍ରଥମେ ତାଙ୍କ ନାଟକ 'ସବା ଶେଷ ଲୋକ'ରେ ଅଭିନୟ କରିଥିଲି ନା ସେତେବେଳେ ସୂଚନା ଭବନରେ ତାଙ୍କ ନାଟକ 'ସୂର୍ଯ୍ୟାସ୍ତ ପୂର୍ବରୁ' ଦେଖିଥିଲି । ହେଲେ ସେଦିନ ଦେଖିଥିବା ସେହି ନାଟକର ସଂଳାପ ଆଜି ବି ଭୁଲିପାରିନି । ସଂଳାପଟି ପ୍ରାୟ ଏହିଭଳି –

ସ୍ତ୍ରୀ – ବାପି ଚିଠି ଲେଖିଛି, ପଢ଼ିବନି ?

ସ୍ୱାମୀ – ତମେ ପଢ଼ିଛ ତ, ହେଲା ।

ସ୍ତ୍ରୀ – ତମେ କାହିଁକି ପଢ଼ିବନି ?

ସ୍ୱାମୀ – ସେ ଚିଠି ବାପି ଲେଖିନି । ପବ୍ଲିକ୍ ସ୍କୁଲ୍‌ରେ ତାଙ୍କ ମିସ୍ ବ୍ଲାକ୍‌ବୋର୍ଡ୍‌ରେ ଚିଠି ଲେଖି ଦିଅନ୍ତି । ପିଲାମାନେ ତାକୁ ଉତାରି ତାଙ୍କ ଡାଡି, ମମି ପାଖକୁ ପଠାନ୍ତି ।

ଭଗବାନ ନାୟକ ବର୍ମାଙ୍କ କବିତା ସଂଗ୍ରହ
ଅବ୍ୟକ୍ତ ଅନୁଜ୍ଞା, ପୃଷ୍ଠା ୫୫

|| ଏବଂ ଆମେ ||

ଏବଂ ଆମେ କରୁ ନେଲୁଁ
ବିପ୍ଳବର ସ୍ୱପ୍ନ ଆଉ ଅଂଗୀକାର ନେଇ
କେଉଁ ଏକ ନାଟକୀୟ ଅମୃତ ଲଗ୍ନର

'ସବା ଶେଷ ଲୋକ' ଯାଏ ଚଢ଼ୁ
ପ୍ରସାରିତ ଆମର ଏ ଅମୃତାଭିଯାନ,

ମୁଁ କେବଳ ତାଳିମାରି କହୁଥାଏଁ :
ବାଃ ବାଃ, ସାବାସ୍ ସାବାସ୍...
ଆମ ପକ୍ଷେ ଠିଆ ହୋଇ
ହସୁଥାଂତି ମୁରୁକୁର ହସ
ଅନଂତ, ମନୋରଂଜନ ଆଉ ଜେ.ପି.ଦାସ ।

ଗୁଲଜାରଙ୍କ ସହ



କେତେ ସହଜରେ ଅଳ୍ପ କେତୋଟି ସଂଳାପରେ ଗୋଟାଏ ନିର୍ଦ୍ଦିଷ୍ଟ ଗୋଷ୍ଠୀକୁ ଅଙ୍ଗୁଳି ନିର୍ଦ୍ଦେଶ କଲେ ଜେ.ପି. ଦାସ ।

ସେମିତି, ତାଙ୍କ 'ଅସଙ୍ଗତ ନାଟକ'ର ଏକ ଯୁକ୍ତିବାଦୀ ସଂଳାପ :

୧ମ – କେତେଟା ବାଜିଛି ?

୨ୟ – ବାର ମିନିଟ୍ ।

୧ମ – କେତେଟା ବାଜି ବାର ମିନିଟ୍ ।

୨ୟ – ମୋର ଘଣ୍ଟାରେ ଘଣ୍ଟା କଣ୍ଟା ନାହିଁ ।

୧ମ – ତା ହେଲେ ଏ ସମୟ ଠିକ୍ ନୁହେଁ ।

୨ୟ – କାହିଁକି ନୁହେଁ ? ମୁଁ ଆଠଟା ବାଜି ବାର ମିନିଟ୍ କହିଥିଲେ କ'ଣ ଠିକ୍ ସମୟ ହୁଅନ୍ତା ? ମୁଁ ତ କହି ପାରି ନ ଥାନ୍ତି ଆଠଟା ବାଜି ବାର ମିନିଟ୍ ପରେ କେତେ ପଳ କେତେ ଅନୁପଳ, କେତେ ଲିତା ? ତା ହେଲେ ଆଠଟା ବାର ବି ଠିକ୍ ସମୟ ନୁହେଁ ।

ଏଭଳି ସଂଳାପ ସହଜରେ ଭୁଲି ହୁଏନି ବୋଲି ଭୁଲି ପାରିନି । ଏଥର ତାଙ୍କ ନାଟକରେ ମୋର ଅଭିନୟ କଥା । 'ଏବଂ ଆମେ' ନାଟ୍ୟ ସଂସ୍ଥାରେ ବିଜୟ ମିଶ୍ରଙ୍କର 'ତଟ ନିରଞ୍ଜନା' ନାଟକ ଶେଷ ହୋଇଛି । ଆମେ ନୂଆ ନାଟକ ଖୋଜୁଛୁ । ଏତିକିବେଳେ ପାଇଲି ଜେ.ପି.ଙ୍କର ନାଟକ 'ସବା ଶେଷ ଲୋକ' । 'ତଟ ନିରଞ୍ଜନା'ରେ ମୁଁ ଥିଲି ନିର୍ଦ୍ଦେଶକ ଏବଂ ଶତାବ୍ଦୀର କଳାକାରର ଧୀର ମଲ୍ଲିକ ଥିଲା ଅଭିନେତା । ସବା ଶେଷ ଲୋକର ନିର୍ଦ୍ଦେଶନା ଦାୟିତ୍ୱ ଧୀରକୁ ଦେଇ ମୁଁ ଅଭିନେତା ହେଲି । କ୍ଷମତା ପାଖରେ ବ୍ୟକ୍ତିତ୍ୱ କେମିତି ବନ୍ଧା ପଡ଼ିଯାଏ, ମୋର ପ୍ରଫେସର ଚରିତ୍ରରେ ଜେ.ପି. ତାଙ୍କୁ



Gulzar

Dear J.P. Da,
I am sending you the poem in Hindi. Giving a title has always been a difficult task.
For all difficult tasks, I come to you!
I am also sending a poem of [illegible] for the cover of the journal, [illegible] had asked for it, you know.
The trip to Delhi, and the evening with you on the 18th, was very fulfilling and memorable. We never had so much of time together.
Thanks for lots of things.
Gulzar
19.9.2001

ଭୁବନେଶ୍ୱର ୧୯୮୭



ଦେଖେଇଛନ୍ତି । ସେହି ବନ୍ଧା ନ ପଡ଼ିବା ପାଇଁ ତ ମୁଁ ନିଜେ ଦିନେ ସରକାରୀ ଚାକିରି ଛାଡ଼ିଥିଲି । ତେଣୁ ସେ ଚରିତ୍ର ଥିଲା ମୋର ବ୍ୟକ୍ତିଗତ ଚରିତ୍ରର ପ୍ରତିଲିପି । ଆଉ ଜେ.ପି.ଙ୍କର ? ତାଙ୍କର ବି କ'ଣ ମେଳ ଥିଲା ସେଇ ପ୍ରଫେସର ଚରିତ୍ର ସାଙ୍ଗରେ ? ନ ହେଲେ ସେ ଏମିତି ଚାକିରି ଛାଡ଼ିଲେ କାହିଁକି ? ଏ ପ୍ରଶ୍ନ ବାରମ୍ବାର ମୋ ମନକୁ ଆସିଛି ।'


ଆନ୍ତର୍ଜାତିକ ଶିଶୁ ଚଳଚ୍ଚିତ୍ର ଜୁରୀ ସଭାପତି, ବାଙ୍ଗାଲୋର ୧୯୮୫

ଭୁବନେଶ୍ୱରରର ଉତ୍କଳ ରଙ୍ଗମଞ୍ଚ ଟ୍ରଷ୍ଟର ଜଗନ୍ନାଥ ପ୍ରସାଦ ଅନ୍ୟତମ ଟ୍ରଷ୍ଟି । ଦିଲ୍ଲୀର ନ୍ୟାସନାଲ୍ ସ୍କୁଲ୍ ଅଫ୍ ଡ୍ରାମା ଅନୁଷ୍ଠାନର ସେ କାର୍ଯ୍ୟକାରୀ ପରିଷଦର ସଭ୍ୟ ତଥା ଉପସଭାପତି ଭାବରେ କାର୍ଯ୍ୟ କରିଛନ୍ତି । ଇଣ୍ଟରନ୍ୟାସନାଲ୍ ଥିଏଟର୍ ଗ୍ରୁପ୍‌ର ଅନ୍ୟତମ ପ୍ରମୁଖ ସଭ୍ୟଭାବରେ ସ୍ୱିଡେନ୍ ଓ ସୋଭିଏତ୍ ୟୁନିଅନ୍ ଗସ୍ତ କରି ନାଟ୍ୟ ଆନ୍ଦୋଳନ ସଂପର୍କରେ ତଥ୍ୟ ସଂଗ୍ରହ କରିଛନ୍ତି ।

ସିନେମା ସହିତ ଜଗନ୍ନାଥ ପ୍ରସାଦଙ୍କ ସଂପର୍କ ଏଠାରେ ଉଲ୍ଲେଖ କରାଯାଇପାରେ । ଦିଲ୍ଲୀ ଫିଲ୍ମସ୍ ସୋସାଇଟି ସହିତ ସେ ସଂପୃକ୍ତ । ୧୯୮୫ରେ ସେ ଥିଲେ ଚିଲ୍ଡ୍ରେନ୍ସ୍ ଫିଲ୍ମ୍ ସୋସାଇଟି ଅଫ୍ ଇଣ୍ଡିଆ (ସି. ଏଫ୍. ଏସ୍. ଆଇ.)ର କାର୍ଯ୍ୟକାରୀ ପରିଷଦର ସଭ୍ୟ । ଏଥିରେ ଅନ୍ୟତମ ସଭ୍ୟ ଥିଲେ ପ୍ରମୁଖ ଗୀତିକାର ଗୁଲ୍‌ଜାର୍ । ଗୁଲ୍‌ଜାର୍‌ଙ୍କ ସହିତ ଜଗନ୍ନାଥ ପ୍ରସାଦଙ୍କ ବନ୍ଧୁତା ଦୀର୍ଘ ଦିନର ।

ଆନ୍ତର୍ଜାତିକ ଶିଶୁ ଚଳଚ୍ଚିତ୍ର ଉତ୍ସବ, ଜୟା ବଚ୍ଚନ ଓ ଅନ୍ୟମାନଙ୍କ ସହିତ, ନୂଆ ଦିଲ୍ଲୀ, ୧୮୮୯



ଶିଶୁ ଚଳଚ୍ଚିତ୍ର ଉତ୍ସବ, ଭୂପେନ୍ ହଜାରିକାଙ୍କ ସହିତ ୧୯୯୧

୧୯୮୫ରେ ବାଙ୍ଗାଲୋରରେ ଅନୁଷ୍ଠିତ ଆନ୍ତର୍ଜାତିକ ଶିଶୁ ଚଳଚ୍ଚିତ୍ର ମହୋତ୍ସବରେ ଜଗନ୍ନାଥ ପ୍ରସାଦ ସଭାପତିତ୍ୱ କରିଥିଲେ । ୧୯୮୭ରେ ତାଙ୍କ ଉଦ୍ୟମରେ ସି.ଏଫ୍.ଏସ୍.ଆଇ. ପକ୍ଷରୁ ଭୁବନେଶ୍ୱରରେ ଆୟୋଜିତ ହୋଇଥିଲା ଆନ୍ତର୍ଜାତିକ ଶିଶୁ ଚଳଚ୍ଚିତ୍ର ମହୋତ୍ସବ । ଏଥିରେ ସେ ଅମୋଲ୍ ପାଲେକରଙ୍କ ସହିତ କାର୍ଯ୍ୟ କରିଥିଲେ । ୧୯୮୭ରେ 'ଫିଲ୍ମସ୍ ଫର୍ ଚିଲ୍ଡ୍ରେନ୍' ଗ୍ରନ୍ଥଟି ସେ ସଂପାଦନା କରିଥିଲେ । ୧୯୮୯ରେ ଇଣ୍ଟରନ୍ୟାସନାଲ୍ ଚିଲ୍ଡ୍ରେନ୍ସ ଫିଲ୍ମ ଫେଷ୍ଟିଭାଲ୍‌ର ସେ ଥିଲେ ସଭାପତି । ୧୯୯୦ରେ ଫିନ୍‌ଲ୍ୟାଣ୍ଡର ଆବୋଠାରେ ଅନୁଷ୍ଠିତ ଆନ୍ତର୍ଜାତିକ

NATIONAL
FILM DEVELOPMENT
CORPORATION
LIMITED
A GOVERNMENT OF INDIA ENTERPRISE

NFDC

Ref: NFDC/CH/ 3937 /84

March 8, 1984.

HRISHIKESH MUKHERJEE
CHAIRMAN

Thank you for your letter dated February 13, 1984. I was away in West Bengal and Orissa to discuss various matters with the respective State Film Development Corporations. Hence the delay in reply.

I am thankful to you for suggesting the name of Shri Surendra Mohanty which I have already conveyed to Directorate of Film Festivals.

I also thank you for your latest book which after reading I will write to you again.

With love,

Yours

(HRISHIKESH MUKHERJEE)

Dr. J.P. Das,
295, West Kidwai Nagar,
New Delhi 110 023.

hm/vak

Jaya Bachchan
Prateeksha, 10th North-South Road, Juhu-Parle Scheme, Bombay-400 049

6th July, 1988.

Dear Dr. Das,

Thank you, very very much for standing by, so strongly in our support.

My C. F. S. I. colleagues and I felt a lot stronger with you and your co-operation.

Have a super holiday, my best wishes to your daughter and son-in-law.

With warmest regards.

What did you think of the Stories?

Yours sincerely,

( JAYA BACHCHAN )

ଶିଶୁ ଚଳଚ୍ଚିତ୍ର ମହୋତ୍ସବରେ ସେ ଥିଲେ ବିଚାରକ ମଣ୍ଡଳୀର ସଦସ୍ୟ । ଦୂରଦର୍ଶନର ଚଳଚ୍ଚିତ୍ର ସ୍କ୍ରିପ୍ଟ୍ ସିଲେକ୍ସନ୍ କମିଟି ସହିତ ମଧ୍ୟ ସଂପୃକ୍ତ ଥିଲେ ।

ସେ ବହୁବାର ଜାତୀୟ ଚଳଚ୍ଚିତ୍ର ପୁରସ୍କାର ମନୋନୟନ କମିଟିରେ ସଭ୍ୟ ରହିଛନ୍ତି । ତାଙ୍କର ଗୋଟିଏ କ୍ଷୁଦ୍ରଗଳ୍ପ 'ସାକ୍ଷାତ୍‌କାର'ର ଟେଲି ଫିଲ୍ମ୍ ପ୍ରସାରିତ ହୋଇଥିଲା ।

ଚଳଚ୍ଚିତ୍ର ଜଗତର ବହୁ ପ୍ରତିଷ୍ଠିତ ନିର୍ଦ୍ଦେଶକ ତଥା ଅଭିନେତାଙ୍କ ସହିତ ଜଗନ୍ନାଥ ପ୍ରସାଦଙ୍କର ବ୍ୟକ୍ତିଗତ ବନ୍ଧୁତା ଓ ସଂପର୍କ ରହିଆସିଛି । ସେମାନଙ୍କ ମଧ୍ୟରୁ କେତେଜଣ ହେଲେ ହୃଷୀକେଶ ମୁଖାର୍ଜୀ, ମୃଣାଳ ସେନ୍, ଅମୋଲ୍ ପାଲେକର୍, ଜୟା ବଚ୍ଚନ ଏବଂ ରବି ଘୋଷ୍ ।

---

# କବିତାର ଶବ୍ଦ, ସ୍ୱର, ଆବେଦନ




ପ୍ରଥମ ପୁରୁଷ ପାଇଁ ସତ୍ୟଜିତ ରାୟଙ୍କ ପ୍ରଚ୍ଛଦ ଡିଜାଇନ୍

୧୯୭୧ରେ ଜଗନ୍ନାଥ ପ୍ରସାଦ ପ୍ରକାଶ କଲେ କବିତା ସଂକଳନ 'ପ୍ରଥମ ପୁରୁଷ' । ସଂକଳନଟି ଓଡ଼ିଆ କାବ୍ୟାମୋଦୀଙ୍କ ଦୃଷ୍ଟି ଆକର୍ଷଣ କଲା କବିତାର ଶବ୍ଦ, ସ୍ୱର, ଆବେଦନ ପାଇଁ ତ ନିଶ୍ଚୟ; ଏହାର ପ୍ରଚ୍ଛଦ, ଆକାର ଓ ପରିପାଟୀ ପାଇଁ ମଧ୍ୟ । ପ୍ରଚ୍ଛଦଟି ଅଙ୍କନ କରିଥିଲେ ଭାରତୀୟ ଚଳଚ୍ଚିତ୍ର ଜଗତର ପ୍ରବାଦ ପୁରୁଷ ସତ୍ୟଜିତ୍ ରାୟ । କୌଣସି ଓଡ଼ିଆ ଗ୍ରନ୍ଥର ପ୍ରଚ୍ଛଦ ଅଙ୍କନ କରିବା ଏହା ଥିଲା ତାଙ୍କର ପ୍ରଥମ ଏବଂ ଶେଷ । କେଉଁ ପରିସ୍ଥିତିରେ ସତ୍ୟଜିତ୍ ରାୟ ଗ୍ରନ୍ଥଟିର ପ୍ରଚ୍ଛଦ ଅଙ୍କନ କରିଥିଲେ, ତାହା ଶୁଣନ୍ତୁ ପ୍ରକାଶକ ଅନନ୍ତ ମହାପାତ୍ରଙ୍କ ମୁଖରୁ :

'୧୯୭୧ ହେବ ବୋଧେ । ଦିନେ ଗୋଟେ କବିତା ସଂଧ୍ୟାରେ ମୁଁ ଜେ.ପି.ଙ୍କୁ ପ୍ରସ୍ତାବ ଦେଲି ଯେ, ତାଙ୍କର କବିତା ସଂକଳନଟିଏ ଛପା ହେବା ନିହାତି ଦରକାର । ସେ ଆଗରୁ ଏ ବିଷୟରେ ଭାବି ନ ଥିଲେ । ବହି ବିକ୍ରି ସହ ସଂପୃକ୍ତ ଥାଇ ମୋର ପ୍ରକାଶନ ସଂପର୍କରେ କିଛିଟା ଧାରଣା ଥିଲା । ମୁଁ ନିଜେ ପ୍ରକାଶକ ହେବି ବୋଲି ପ୍ରସ୍ତାବ ଦେଲି । ସେ ରାଜି ହୋଇଗଲେ । କେମିତି କେଜାଣି ଆମ ଦୁଇଜଣଙ୍କ ମୁଣ୍ଡରେ ପଶିଲା ପ୍ରସିଦ୍ଧ ଚଳଚ୍ଚିତ୍ର ନିର୍ଦ୍ଦେଶକ ସତ୍ୟଜିତ୍ ରାୟଙ୍କୁ କବିତା ବହିର ପ୍ରଚ୍ଛଦ ଆଙ୍କିବା କଥା କହିବା ପାଇଁ ।


Satyajit Ray

ଆମେ ଦି'ଜଣଯାକ ସତ୍ୟଜିତ୍ ରାୟଙ୍କୁ ବେଶ୍ ଶ୍ରଦ୍ଧା କରୁଥିଲୁ । ତେବେ ସତ୍ୟଜିତ୍ ରାୟଙ୍କର ଜଣେ ଅନ୍ତରଙ୍ଗ ବନ୍ଧୁ କିରଣ ରାହାଙ୍କୁ ମୁଁ ଜାଣିଥିଲି ଏବଂ ଜେ.ପି. ଜାଣିଥିଲେ ନିର୍ଦ୍ଦେଶକଙ୍କର ଜଣେ ସଂପର୍କୀୟା ମିନୁ ମୁଖାର୍ଜୀଙ୍କୁ । ସେମାନଙ୍କ ଦ୍ୱାରା ସତ୍ୟଜିତ୍ ରାୟଙ୍କୁ ରାଜି କରେଇ ଦିଆଗଲା । କିନ୍ତୁ ସର୍ତ୍ତ ଥିଲା, କଭର ଆଂକିବା ପୂର୍ବରୁ କବିତାଗୁଡ଼ିକର ଉଭୟ ଇଂରାଜୀ ଓ ବଂଗଳା ଅନୁବାଦ ସେ ପଢ଼ିବେ । ଦ୍ୱିତୀୟ ସର୍ତ୍ତ ଥିଲା, କଭରଟି ରେଡିଆଣ୍ଟ ପ୍ରେସ୍‌ରେ ହିଁ ଛପା ହେବ, ଆଉ କୋଉଠି ନୁହେଁ । ଯେତେବେଳେ ବହିଟି ପ୍ରକାଶିତ ହେଲା, ଅନେକେ ବିଶ୍ୱାସ କରିପାରି ନ ଥିଲେ ଯେ ସତରେ ସତ୍ୟଜିତ ରାୟ ପ୍ରଚ୍ଛଦ ଆଙ୍କିଥିବେ ବୋଲି ଏବଂ ଅଭିନେତା ଅନନ୍ତ ମହାପାତ୍ର ପ୍ରକୃତରେ ତା'ର ପ୍ରକାଶକ !

ମୋ ପାଇଁ ତାହା ଥିଲା ପ୍ରଥମ ଓ ଶେଷ ବହି । ଆଉ କାହାର ବହି ମୁଁ ପ୍ରକାଶ କରି ନାହିଁ । ଜେ.ପି.ଙ୍କ ବି ତାହା ଥିଲା ପ୍ରଥମ ବହି – ପ୍ରଥମ ପୁରୁଷ – କିନ୍ତୁ ଶେଷ ନୁହେଁ ।'

(ପ୍ରତିବେଶୀ, ମାର୍ଚ୍ଚ ୨୦୦୩)

ଏହାର ମୁଦ୍ରାକର ଦିବାକର ମିଶ୍ର ଏହା ସଂପର୍କରେ କହନ୍ତି : '୧୯୭୧ ମସିହାରେ ଜଗନ୍ନାଥ ପ୍ରସାଦଙ୍କର କବିତା ବହି 'ପ୍ରଥମ ପୁରୁଷ' ଛପା ହୋଇଥିଲା ଆମ ଗୋସ୍ୱାମୀ ପ୍ରେସ୍‌ରେ । ସେ ଚାହୁଁଥିଲେ ତାଙ୍କ ବହିରେ ଉନ୍ନତମାନର କାଗଜ ବ୍ୟବହାର କରାଯାଉ ଓ ଛପା ଖୁବ୍ ପରିଷ୍କାର ଓ ନିର୍ଭୁଲ ହେଉ । ଅତି ଯତ୍ନର ସହିତ ବହିଟି ଇଂଲଣ୍ଡରୁ ନୂଆ ଆସିଥିବା ମନୋଟାଇପ୍ ମେସିନ୍‌ରେ କମ୍ପୋଜ୍ କରାହୋଇ ଜର୍ମାନ୍ ମେସିନ୍‌ରେ ଛପା ହୋଇଥିଲା । ଭଲ ବନ୍ଧେଇ କରିବା ପାଇଁ କଲିକତାର ବୈଠକଖାନାରୁ ଦକ୍ଷ ବାଇଣ୍ଡର୍ ଅଣା ଯାଇଥିଲା । ଫଳରେ ବହିଟି ବେଶ୍ ସୁନ୍ଦର ହୋଇଥିଲା । ସାଧାରଣ ଗ୍ରାହକମାନେ ସୁନ୍ଦର ମୁଦ୍ରଣ ସମ୍ବନ୍ଧରେ ସେ ସମୟରେ ପ୍ରାୟ ସଚେତନ ନ ଥିବା ବେଳେ ଜଗନ୍ନାଥ ପ୍ରସାଦଙ୍କର ଏପରି ଆଗ୍ରହ ମୋତେ ବେଶ୍ ଆନନ୍ଦ ଦେଇଥିଲା ।'

'ପ୍ରଥମ ପୁରୁଷ' ପ୍ରକାଶିତ ହେଲା ବେଳକୁ ଓଡ଼ିଆ କାବ୍ୟ ସାହିତ୍ୟ ଏକ ନୂତନ ମୋଡ଼ ନେବା ଆରମ୍ଭ କରିଥାଏ । ସଚ୍ଚି ରାଉତରାୟଙ୍କ ପ୍ରଭାବ ହ୍ରାସ ହୋଇ ନ ଥାଏ ଠିକ୍, କିନ୍ତୁ ଗୁରୁପ୍ରସାଦ ମହାନ୍ତିଙ୍କ 'କାଳପୁରୁଷ', 'ନୂତନ କବିତା' ତଥା ରମାକାନ୍ତ ରଥଙ୍କ 'କେତେଦିନର' ଏକ ନୂତନ ଯୁଗର ସୂତ୍ରପାତ କରିଥାଏ । ଜଗନ୍ନାଥ ପ୍ରସାଦଙ୍କ 'ପ୍ରଥମ ପୁରୁଷ' ଏହି ନୂତନ ଯୁଗର ଅନ୍ୟ ଏକ ସାର୍ଥକ କୃତି ।

## meet a poet

IT WAS AN ODD PLACE FOR READING poetry—a corner of a Park Street restaurant jampacked with the Saturday evening crowd. But thus we escaped notice which we wanted; the animated chatter droned on and glasses and china clinked—a fascinating counterpoint to the melodious chanting of some Oriya poems by the poet himself, Jagannath Prasad Das from Bhubaneswar. For Bengalis like us (or should we say Indian Bengalis now?) the language was no barrier; not one word failed to ring a bell; and the unfamiliar sound of case-endings and inflexions of verbs did not distract us from our view of the poet's chairoscuro world where the melancholy of unrequited or perhaps unrealizable love is too deep to be relieved by the half lights of dream or purposeful quest. The agony was muted and a civilized sadness expressed with frosty elegance lent great beauty to most of the poems. No wonder the repository of these poems, J.P.'s first book, *Prathama Purusha* (First Person), also printed in a striking format with an excellent cover design (Lark Books, Cuttack-2. Price Rs. 4), should be a best seller. And our grilling of this young and very modest poet produced a surprise—he is also a painter, playwright and top civil servant in the Orissa Government! "How do you find time to cultivate your private passions," we asked. "I get up before sunrise and squeeze a couple of hours for myself out of my busy routine," he said. So, the popular image of a poet being a slothful late-riser is all wrong!

And this reminds us. How good it would have been if the languages of India demolished their own and impenetrable walls of alphabets and adopted a common script ! At least half the battle for integration would have been won.

ହିନ୍ଦୁସ୍ଥାନ ଷ୍ଟାଣ୍ଡାର୍ଡ, କଲିକତା
୨୮ ଫେବୃଆରୀ ୧୯୭୨

## The yawning gap

When at a recent meeting of the Janata Parliamentary Party Union Cabinet Minister Biju Patnaik painted a rosy picture of the present situation in the country, Prof. Dilip Chakravarty, MP, chose to recite poetry to contradict him and bring out the gap between expectations and achievements. Prof. Chakravarty was quoting from J. P. Das's book of poems: "First Person," and the poem: "Homecoming." The lines were:

When I left home
  I thought of taking some colour
  and light from the sky;
  some heat from the sun,
  rain from the clouds
  thrill from the woods,
  and some experience from the void.
I got nothing.
So I thought of taking
  some hope from the sky,
  promise from the sun
  and dream from the clouds,
  some surprise from the void.
I lost my way.
  In my helpless return,
  I sit and wonder
  about fate's injustice;
  looking at the lines on my palms
  I measure the distance
  between one despair and another.

Coincidentally the poet is also from the Minister's home state (Orissa).

ନେସନାଲ୍ ହେରାଲ୍ଡ, ନିଉ ଦିଲ୍ଲୀ,
୩ ନଭେମ୍ବର ୧୯୭୮

ଜଗନ୍ନାଥ ପ୍ରସାଦଙ୍କ ପ୍ରଥମ ନାଟକ 'ସୂର୍ଯ୍ୟାସ୍ତ ପୂର୍ବରୁ'ର ସଫଳତା ଭଳି 'ପ୍ରଥମ ପୁରୁଷ' ସର୍ବଭାରତୀୟ କ୍ଷେତ୍ରରେ ଆଦୃତ ହେବା ନୂତନ ଓଡ଼ିଆ କବିତାର ଏକ ବ୍ୟାପକ ସ୍ୱୀକୃତି ବୋଲି କୁହାଯାଇପାରେ । ୧୯୭୨ରେ କୋଲ୍‌କାତାରେ ଜଗନ୍ନାଥ ପ୍ରସାଦଙ୍କ ପାଇଁ ଆୟୋଜିତ ହୋଇଥିଲା ଏକ କବିତା ପଠନ ସଂଧ୍ୟା । ଅନ୍ୟମାନଙ୍କ ମଧ୍ୟରେ ଏଥିରେ ଉପସ୍ଥିତ ଥିଲେ ପ୍ରମୁଖ ବଙ୍ଗୀୟ କବି ଶକ୍ତି ଚଟ୍ଟୋପାଧ୍ୟାୟ । ଏହି କବିତା ସଂଧ୍ୟା ସଂପର୍କରେ ଇଂରାଜୀ ଦୈନିକ ହିନ୍ଦୁସ୍ତାନ ଷ୍ଟାଣ୍ଡାର୍ଡ୍‌ର ସମ୍ବାଦଟି ଥିଲା ଏହିପରି :

'ଶନିବାର ସଂଧ୍ୟା । ପାର୍କ ଷ୍ଟ୍ରିଟ୍ ରେସ୍ତୋରାଁର ଜନାକୀର୍ଣ୍ଣ ଗୋଟିଏ ରୁମ୍ । କବିତା ପାଠ କରିବାର ସ୍ଥାନ ଏ ନୁହେଁ । ଚା'ପାନ ମଧ୍ୟରେ ଜଗନ୍ନାଥ ପ୍ରସାଦ ଦାସଙ୍କର ଚମତ୍କାର କବିତା ଆବୃତ୍ତି ସଂପର୍କରେ ରେସ୍ତୋରାଁରେ ଉପସ୍ଥିତ ଅନେକେ ଅବହିତ ନ ଥିଲେ । ଆମ ବଙ୍ଗାଳୀମାନଙ୍କର (ଭାରତୀୟ ବଙ୍ଗାଳୀମାନଙ୍କର ?) କବିତାର ଭାଷା ବୁଝିବାରେ କୌଣସି ଅସୁବିଧା ନ ଥିଲା; ଗୋଟେ ବି ଶବ୍ଦ ଅବୁଝା ରହୁ ନ ଥିଲା । କ୍ରିୟା କର୍ମର ପାର୍ଥକ୍ୟ ସତ୍ତ୍ୱେ କବିଙ୍କର ଉଚ୍ଚାରଣରେ ବିଫଳ ପ୍ରେମର ଅନୁଭୂତି ଓ ନୂତନ ସ୍ୱପ୍ନର ଅନୁସନ୍ଧାନ ଆମ ଉପରେ ଗଭୀର ରେଖାପାତ କରୁଥିଲା । ବିଷାଦ ଓ ବେଦନା ଅଧିକାଂଶ କବିତାରେ ପ୍ରକାଶିତ ହେଉଥିଲା ।'

(ଫେବୃୟାରୀ ୨୮, ୧୯୭୨)

ଲକ୍ଷ୍ୟ କରିବାର କଥା, ଜଗନ୍ନାଥ ପ୍ରସାଦଙ୍କ କବିତା ସଂପର୍କରେ ହିନ୍ଦୁସ୍ତାନ ଷ୍ଟାଣ୍ଡାର୍ଡ୍‌ର ସାମ୍ବାଦିକ ଯାହା ଉଲ୍ଲେଖ କରିଥିଲେ – ବିଫଳ ପ୍ରେମର ଅନୁଭୂତି ଓ ନୂତନ ସ୍ୱପ୍ନର ସନ୍ଧାନ – ତାହା କେବଳ 'ପ୍ରଥମ ପୁରୁଷ'କୁ ନୁହେଁ, ତାଙ୍କର ପରବର୍ତ୍ତୀ ଦଶଟି ସଂକଳନକୁ ମଧ୍ୟ ଆଚ୍ଛାଦିତ କରି ରଖିଛି । ନଗର ଜୀବନ ଯାତ୍ରାର ଚିତ୍ର ଓ ରୂପକଳ୍ପ ହୁଏତ ମୁଖ୍ୟ କାରଣ ଥିଲା କୋଲ୍‌କାତାର ବଙ୍ଗଭାଷୀ ଶ୍ରୋତାମାନେ 'ପ୍ରଥମ ପୁରୁଷ'ର କବିତାସବୁକୁ ଅନାୟାସରେ ହୃଦୟଙ୍ଗମ କରିବାରେ । ମାର୍ଜିତ, ବୋଧଗମ୍ୟ, ସ୍ୱଚ୍ଛଭାଷା ଓ ଅନୁଭୂତିର ଅକୃତ୍ରିମ ପ୍ରକାଶ 'ପ୍ରଥମ ପୁରୁଷ' ପରବର୍ତ୍ତୀ କବିତା ସଂକଳନଗୁଡ଼ିକରେ ମଧ୍ୟ ସୁରକ୍ଷିତ ମନେହୁଏ ।

୧୯୭୪ରେ 'ପ୍ରଥମ ପୁରୁଷ' ହିନ୍ଦୀରେ ପ୍ରକାଶିତ ହେଲା; ୧୯୭୬ରେ ଇଂରାଜୀରେ । ଇଂରାଜୀ ଅନୁବାଦ କରିଥିଲେ ଜଗନ୍ନାଥ ପ୍ରସାଦଙ୍କ ବଂଧୁ ଇଂରାଜୀ ପ୍ରଫେସର୍ ଦେବ ପଟ୍ଟନାୟକ ।

ସମକାଳର ପ୍ରମୁଖ କବି ରମାକାନ୍ତ ରଥ ଜଗନ୍ନାଥ ପ୍ରସାଦଙ୍କଠାରୁ ବୟସରେ ଦୁଇ ବର୍ଷ ବଡ଼; ସୀତାକାନ୍ତ ମହାପାତ୍ର ତାଙ୍କର ସମବୟସ୍କ । ସୁରେନ୍ଦ୍ର ମହାନ୍ତି 'ଓଡ଼ିଆ ସାହିତ୍ୟର କ୍ରମବିକାଶ' ଗ୍ରନ୍ଥରେ ରମାକାନ୍ତ, ସୀତାକାନ୍ତ ଓ ଜଗନ୍ନାଥ ପ୍ରସାଦଙ୍କ ସଂପର୍କରେ ମୂଲ୍ୟବାନ୍ ମନ୍ତବ୍ୟ ପ୍ରଦାନ କରିଛନ୍ତି । ଜଗନ୍ନାଥ ପ୍ରସାଦଙ୍କ ସମ୍ପର୍କରେ ତାଙ୍କର ମନ୍ତବ୍ୟ ଏହିପରି :

'ଜଗନ୍ନାଥ ପ୍ରସାଦ ଦାସ ସପ୍ତମ ଦଶକର ଜଣେ ଉଲ୍ଲେଖଯୋଗ୍ୟ ମୁଖ୍ୟ କବି ହୋଇପାରିଥାନ୍ତେ । କିନ୍ତୁ ଚିତ୍ରାଙ୍କନଠାରୁ ନାଟକ ପର୍ଯ୍ୟନ୍ତ, ତାଙ୍କର ସୃଷ୍ଟି ପ୍ରତିଭା ନାନା ଦିଗରେ ବିକ୍ଷିପ୍ତ । ଭାରତୀୟ ପ୍ରଶାସନିକ-ନିଯୋଗରେ ସେ ମଧ୍ୟ ନିୟୋଜିତ ଅଛନ୍ତି । 'ପ୍ରଥମ ପୁରୁଷ' ସଂକଳନ ବ୍ୟତୀତ, ତାଙ୍କର ଅନ୍ୟ କବିତା ଗ୍ରନ୍ଥ ପ୍ରକାଶିତ ହୋଇ ନାହିଁ । ଏହି କବିତାଗୁଡ଼ିକରେ କକ୍ଷଚ୍ୟୁତି, ନିଃସଙ୍ଗତା ଓ ଆତ୍ମ-ପରିଚୟହୀନତାର ସାଂପ୍ରତିକ ସ୍ୱର ପରିଲକ୍ଷିତ ହେଲେ ହେଁ, ଆଙ୍ଗିକ ଓ ଶୈଳୀ ଦୃଷ୍ଟିରୁ ନୂତନ କବିତାର ପୋଷାକୀ ଚେହେରା କିମ୍ବା ଏକ୍ସପେରିମେଣ୍ଟେସନ୍‌ର ମୋହରୁ ଏସବୁ ମୁକ୍ତ । ଆଲୋଚିତ କବିତାଗୁଡ଼ିକ ମେଟାଫିଜିକାଲ୍ ଶୈଳୀରେ ରଚିତ । ଏହାର ରୂପକଳ୍ପସବୁ ଯେପରି ଅଭିନବ, ସେହିପରି ସଂକ୍ଷିପ୍ତ .... । ଓଡ଼ିଆ କବିତାରେ ଜଗନ୍ନାଥ ପ୍ରସାଦ ଏକ ଅପୂର୍ଣ୍ଣ ପ୍ରତିଶ୍ରୁତି ।'

ସୁରେନ୍ଦ୍ର ମହାନ୍ତିଙ୍କ ଶେଷ ମନ୍ତବ୍ୟଟି ଲକ୍ଷ୍ୟ କରନ୍ତୁ । ୧୯୭୮ରେ ଓଡ଼ିଆ ସାହିତ୍ୟର କ୍ରମବିକାଶ ଗ୍ରନ୍ଥ ପ୍ରକାଶିତ ହେଲାବେଳକୁ ଜଗନ୍ନାଥ ପ୍ରସାଦଙ୍କ ଦ୍ୱିତୀୟ କବିତା ସଂକଳନ 'ଅନ୍ୟସବୁ ମୃତ୍ୟୁ' (୧୯୭୬) ପ୍ରକାଶିତ ହୋଇ ସାରିଥିଲା । ସୁରେନ୍ଦ୍ର ମହାନ୍ତି ଆପାତତଃ ଦ୍ୱିତୀୟ ସଂକଳନଟି ସଂପର୍କରେ ଅବହିତ ନ ଥିଲେ । ତାଙ୍କର ଆଶଙ୍କା ଥିଲା, ଜଗନ୍ନାଥ ପ୍ରସାଦଙ୍କ ଭଳି ଜଣେ ସମର୍ଥ କବି ବୋଧହୁଏ 'ପ୍ରଥମ ପୁରୁଷ' ପରେ କବିତା ରଚନାରୁ ମୁହଁ ଫେରାଇନେବେ । ତେଣୁ, ସେ ସ୍ନେହପୂର୍ଣ୍ଣ ଭାଷାରେ ଜଗନ୍ନାଥ ପ୍ରସାଦ 'ଏକ ଅପୂର୍ଣ୍ଣ ପ୍ରତିଶ୍ରୁତି' ବୋଲି ଲେଖିଥିଲେ । ବାସ୍ତବରେ ପରବର୍ତ୍ତୀ ସମୟରେ ଜଗନ୍ନାଥ ପ୍ରସାଦ ମୁଖ୍ୟତଃ କବିତା ହିଁ ରଚନା କଲେ ଓ 'ଆହ୍ନିକ' ସଂକଳନ ପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର (୧୯୯୧) ଏବଂ 'ପରିକ୍ରମା' ପାଇଁ ସରସ୍ୱତୀ ସମ୍ମାନ (୨୦୦୬) ଲାଭ କଲେ ।

'ପ୍ରଥମ ପୁରୁଷ' ପରେ ଜଗନ୍ନାଥ ପ୍ରସାଦଙ୍କ ଅନ୍ୟାନ୍ୟ କବିତା ସଂକଳନଗୁଡ଼ିକ ହେଲା, ଅନ୍ୟସବୁ ମୃତ୍ୟୁ (୧୯୭୬), ଯେ ଯାହାର ନିର୍ଜନତା (୧୯୭୯), ଅନ୍ୟ ଦେଶ ଭିନ୍ନ ସମୟ (୧୯୮୨), ଯାତ୍ରାର ପ୍ରଥମ ପାଦ (୧୯୮୮), ଆହ୍ନିକ (୧୯୯୦), ସ୍ଥିର ଚିତ୍ର (୧୯୯୧), ସଚରାଚର (୧୯୯୪), ସ୍ମୃତିର ସହର (୧୯୯୫), ପରିକ୍ରମା (୧୯୯୮) ଓ ଅସମୟ (୨୦୦୪) ।

ଜଗନ୍ନାଥ ପ୍ରସାଦଙ୍କ କବିତା ସଂପର୍କରେ ବହୁ ପ୍ରବୀଣ ଓ ତରୁଣ ସମାଲୋଚକ ଆଲୋଚନା କରିଛନ୍ତି । ରମାକାନ୍ତ ରଥ, ଜଗନ୍ନାଥ ପ୍ରସାଦଙ୍କ ହିନ୍ଦୀ କବିତା ସଂକଳନ 'ଶବ୍ଦଭେଦ' (୧୯୯୧)ର ଭୂମିକାରେ ଉଲ୍ଲେଖ କରିଛନ୍ତି,

'ଜଗନ୍ନାଥ ପ୍ରସାଦ ମୋ'ଠାରୁ ଅଧିକ ବରିଷ୍ଠ କବି ବୋଲି କୁହାଯାଇପାରେ । କୌଣସି ପତ୍ରିକାରେ ମୋର କବିତା ପ୍ରକାଶିତ ହେବା ପୂର୍ବରୁ ତାଙ୍କର ପ୍ରଥମ କବିତା ସଂକଳନ ପ୍ରକାଶିତ ହୋଇ ସାରିଥିଲା ଏବଂ ତାଙ୍କୁ ଜଣେ ପ୍ରତିଭାବାନ୍ କବିର ମର୍ଯ୍ୟାଦା ମିଳିଥିଲା ।'

ପ୍ରବୀଣ କବି ଓ ସମାଲୋଚକ ଚିନ୍ତାମଣି ବେହେରା ୧୯୭୨ ଫେବୃୟାରୀରେ ବଲାଙ୍ଗୀରରୁ ଲିଖିତ ଏକ ପତ୍ରରେ ମତ ଦେଇଥିଲେ, 'ସାଂପ୍ରତିକ କାଳର ବହୁ ସୃଷ୍ଟିର ଅଯଥା ସ୍ଫୀତି, ଶ୍ରମସାଧ୍ୟ ଦୁର୍ବୋଧତା, ଅଗଭୀର ଜୀବନଜିଜ୍ଞାସା, ଅହେତୁକ କ୍ଲିଷ୍ଟ ପ୍ରକାଶଭଙ୍ଗୀ ମଧ୍ୟରେ ତାଙ୍କ କବିତା ନିର୍ମଳ ଓ ଶୁଦ୍ଧ କବିତ୍ୱର ଆଲୋକ ବର୍ତ୍ତିକା' ।

ପ୍ରଫେସର ସର୍ବେଶ୍ୱର ଦାଶ ଜଗନ୍ନାଥ ପ୍ରସାଦଙ୍କ କବିତା ସଂପର୍କରେ ଏକ ମୂଲ୍ୟବାନ୍ ଆଲୋଚନାରେ ନିମ୍ନୋକ୍ତ ତଥ୍ୟ ପ୍ରଦାନ କରିଛନ୍ତି :

କ) ଜଗନ୍ନାଥ ପ୍ରସାଦଙ୍କ ପ୍ରଥମ ପର୍ଯ୍ୟାୟର କବିତା ପାଶ୍ଚାତ୍ୟ କବିଗଣଙ୍କର, ବିଶେଷତଃ ଇଲିୟଟୀୟ ଚେତନା ଦ୍ୱାରା ବିଶେଷ ଭାବରେ ପ୍ରଭାବିତ । ଅଧିକାଂଶ କବିତାର ବିଷୟବସ୍ତୁ ଏକାକୀବୋଧ, ନିର୍ବାସନ, ନିଃସଙ୍ଗତା, ନିର୍ଜନତା, ନିସ୍ତବ୍ଧତା, ଶୂନ୍ୟତା, ସ୍ଥିତିବାଦୀ ବିଷାଦ, ଅନିଶ୍ଚିତତା, ଯନ୍ତ୍ରଣା, ବିଚ୍ଛେଦ, ମୃତ୍ୟୁ ଚେତନା ।

ଖ) ପରବର୍ତ୍ତୀ ପର୍ଯ୍ୟାୟର କବିତାରେ ଜଗନ୍ନାଥ ପ୍ରସାଦ ଅଧିକରୁ ଅଧିକ ବହିର୍ମୁଖୀ ହୋଇଛନ୍ତି । କିମ୍ବା ଏପରି କହିହେବ – ତାଙ୍କ କବିତାରେ ଅନ୍ତର୍ମୁଖିତା ଓ ବହିର୍ମୁଖିତାର ସମନ୍ୱୟ ଘଟିଛି ।

ଗ) ଜଗନ୍ନାଥ ପ୍ରସାଦଙ୍କ କବିତାରେ ବିଭିନ୍ନ ଧାରା ଓ ରୂପ ଲକ୍ଷ୍ୟ କରାଯାଇପାରେ । ଚିତ୍ରଶିଳ୍ପୀ ହୋଇଥିବାରୁ ଶବ୍ଦରେ ସେ ଅଙ୍କନ କରିଛନ୍ତି ଅଗଣିତ ଚିତ୍ରକଳ୍ପ । ବହୁ ଚିତ୍ରକଳ୍ପ ତାଙ୍କର ଏକାନ୍ତ ନିଜସ୍ୱ ଓ ସ୍ୱତଃସ୍ଫୂର୍ତ୍ତ ।

ଘ) କବିଭାବରେ ସେ ସମାଜ ପ୍ରତି ସମ୍ବେଦନଶୀଳ । ତାଙ୍କର ବହୁ କବିତା ଉଦାର ମାନବିକଚେତନାର ନିଦର୍ଶନ ।

କବି ଓ ସମାଲୋଚକ ଶତ୍ରୁଘ୍ନ ପାଣ୍ଡବ ଜଗନ୍ନାଥ ପ୍ରସାଦଙ୍କ କବିତା ସଂପର୍କରେ ମତ ଦିଅନ୍ତି :

'ସରଳତା, ପ୍ରାଞ୍ଜଳତା ଓ ବୋଧଗମ୍ୟତା କବି ଜଗନ୍ନାଥ ପ୍ରସାଦଙ୍କ କବିତାର ବିଶେଷ ପରିଚୟ ବହନ କରେ ଯେଉଁଠି ବୌଦ୍ଧିକତା ଓ ଆବେଗର ଚମତ୍କାର ମିଶ୍ରଣ ଘଟିଥାଏ – ଶବ୍ଦଚୟନ ନିପୁଣତାରେ ଚିତ୍ର ଫୁଟାଇବା, ଚିତ୍ରକଳ୍ପର ଜଗତ ନିର୍ମାଣ କରିବା ତାଙ୍କ ଅଭିବ୍ୟକ୍ତିର ଅନ୍ୟତମ ଦିଗ । ରୂପକାୟିତ, ଚିତ୍ରାୟିତ ହୋଇ, ଏ ଚୟନ କେବଳ ବର୍ଣ୍ଣନା ଚାତୁର୍ଯ୍ୟ ନୁହେଁ; କବିତାର ଆବେଦନକୁ ପୁଷ୍ଟ କରେ ।'

(ଉଦ୍‌ଭାସ, ଡିସେମ୍ବର ୨୦୦୭)

ବିଂଶ ଶତାବ୍ଦୀର ସପ୍ତମ ଦଶକରେ ଯାଦବପୁର ବିଶ୍ୱବିଦ୍ୟାଳୟ ତୁଳନାତ୍ମକ ସାହିତ୍ୟ ବିଭାଗରେ ଅଧ୍ୟାପକ ଥିଲେ ଡେଭିଡ୍ ମ୍ୟାକ୍‌ସିଅନ୍ । ସେ ଭାରତର ଇଂରାଜୀ ସାହିତ୍ୟ ସଂପର୍କରେ କେତେକ ମୂଲ୍ୟବାନ୍ ପ୍ରବନ୍ଧ ଲେଖିଥିଲେ । ସେଗୁଡ଼ିକ 'ଇଣ୍ଡିଆନ୍ ରାଇଟିଂ ଇନ୍ ଇଂଲିଶ୍ : କ୍ରିଟିକାଲ୍ ଏସେଜ୍' (୧୯୬୯)ରେ ସଂକଳିତ ହୋଇଛି ।

ମ୍ୟାକ୍‌ସିଅନ୍ ମୂଳତଃ ସ୍କଟ୍‌ଲ୍ୟାଣ୍ଡର ଅଧିବାସୀ । ସେ କୌଣସି ଏକ ପ୍ରବନ୍ଧରେ ପ୍ରଶ୍ନ ଉଠାଇଥିଲେ – ଭାରତୀୟ ସାହିତ୍ୟର ସଂଜ୍ଞା କ'ଣ ? ଯେକୌଣସି ସାହିତ୍ୟର ଆଧାର ନିର୍ଦ୍ଦିଷ୍ଟ ଏକ ଭାଷା – ତେଣୁ ଓଡ଼ିଆ ସାହିତ୍ୟ, ବଙ୍ଗଳା ସାହିତ୍ୟର ସଂଜ୍ଞା ସ୍ପଷ୍ଟ । ଅବଶ୍ୟ ବିଗତ ଦୁଇଶହ ବା ଦେଢ଼ଶହ ବର୍ଷ ମଧ୍ୟରେ ଇଂରାଜୀ ସାହିତ୍ୟ କହିଲେ, ଭାଷାଗତ ଐକ୍ୟ ସତ୍ତ୍ୱେ ବିଭିନ୍ନ ଦେଶର ସାହିତ୍ୟକୁ ବୁଝାଉଛି । ଯେପରି – ଆମେରିକାନ୍ ସାହିତ୍ୟ, ଅଷ୍ଟ୍ରେଲିଆନ୍ ସାହିତ୍ୟ, ୱେଷ୍ଟଇଣ୍ଡିଆନ୍ ସାହିତ୍ୟ ଇତ୍ୟାଦି । ଏ ପ୍ରସଙ୍ଗରେ ବିସ୍ତୃତ ଆଲୋଚନା ନ କରି କୁହାଯାଇପାରେ, କୌଣସି ଭାରତୀୟ ସାହିତ୍ୟ କୃତି ବା ଗ୍ରନ୍ଥ ସର୍ବଭାରତୀୟ ହେବାର ମର୍ଯ୍ୟାଦା ଲାଭ କରିବାକୁ ହେଲେ ଏହା ଯେଉଁ ଭାଷାରେ ରଚିତ ହୋଇଥାଉ ନା କାହିଁକି, ଇଂରାଜୀ ତଥା ଅନ୍ୟ ଭାରତୀୟ ଭାଷାମାନଙ୍କରେ ଅନୂଦିତ ହେବା ଆବଶ୍ୟକ । ମ୍ୟାକ୍ସିଅନ୍ ସାହେବ ଦୁଇଟି ଭାଷା – ମୂଳ ଭାରତୀୟ ଭାଷା ଓ ଇଂରାଜୀ ଅନୁବାଦ ଉପରେ ଗୁରୁତ୍ୱ ପ୍ରଦାନ କରିଛନ୍ତି ।



୧୯୭୨

ଏଠାରେ ନିର୍ଦ୍ଦିଷ୍ଟ ଉଦାହରଣଟିଏ ନିଆଯାଇପାରେ । ପ୍ରାୟ ପଚାଶ ବର୍ଷ ହେଲା ପ୍ରେମ୍‌ଚନ୍ଦ୍‌ଙ୍କ 'ଗୋଦାନ' ଇଂରାଜୀରେ ଅନୂଦିତ ହେବା ପରେ ଭାରତୀୟ ଉପନ୍ୟାସର ଦିଗବାରେଣୀ ଭାବରେ ଗୃହୀତ ହୋଇଛି । ମାତ୍ର ଫକୀରମୋହନଙ୍କ 'ଛ'ମାଣ ଆଠଗୁଣ୍ଠ' ମାତ୍ର ଅଳ୍ପ କେତେବର୍ଷ ହେଲା ବିଶେଷତଃ, ଏହାର ଇଂରାଜୀ ଅନୁବାଦ ୨୦୦୫ରେ ଆମେରିକାର ୟୁନିଭର୍ସିଟି ଅଫ୍ କାଲିଫର୍ଣ୍ଣିଆ ପ୍ରେସ୍ ଦ୍ୱାରା ପ୍ରକାଶିତ ହେବା ପରେ ଭାରତୀୟ ଉପନ୍ୟାସର ଅନ୍ୟତମ ମୂଳଭିତ୍ତି ଭାବରେ ମର୍ଯ୍ୟାଦା ଲାଭ କରିଛି । ସିଧାସଳଖ କହିଲେ, ଇଂରାଜୀ ଭଳି ପ୍ୟାନ୍–ଇଣ୍ଡିଆନ୍ ବା ସମଗ୍ର ଦେଶରେ ପ୍ରସାରିତ ଭାଷାରେ ଅନୂଦିତ ନ ହେବା ଯାଏଁ, ଭାରତୀୟ ଭାଷାର ଏକ ସାହିତ୍ୟ କୃତି ଆଞ୍ଚଳିକ ହୋଇ ହିଁ ରହିଯାଏ । ଏହା ଏକ ପୀଡ଼ାଦାୟକ ସତ୍ୟ ।

ସୌଭାଗ୍ୟର ବିଷୟ, ଜଗନ୍ନାଥ ପ୍ରସାଦଙ୍କ ଅଧିକାଂଶ କବିତା ଇଂରାଜୀରେ (ଓ ଅନ୍ୟାନ୍ୟ ଭାରତୀୟ ଭାଷାରେ) ଅନୂଦିତ ଓ ବିଭିନ୍ନ ସଂକଳନରେ ସ୍ଥାନିତ । କେବଳ ଅନୂଦିତ ନୁହେଁ, ଅନୁବାଦର ମାନ ମଧ୍ୟ ପ୍ରାୟତଃ ଉଚ୍ଚକୋଟୀର ।

ଅନୁବାଦ ମାଧ୍ୟମରେ ଜଗନ୍ନାଥ ପ୍ରସାଦଙ୍କ କବିତାଗୁଡ଼ିକ (ଗଳ୍ପ ଓ ନାଟକ ମଧ୍ୟ) ସର୍ବଭାରତୀୟ କ୍ଷେତ୍ରରେ ପରିଚିତ ଓ ଆଦୃତ । ତାଙ୍କର 'କଳାହାଣ୍ଡି', 'ଡାଫୋଡିଲ୍', 'ଗୁଡୁରାଟ ପରେ' ଭଳି କବିତା ସହିତ ବହୁ ଅଣଓଡ଼ିଆ ପାଠକ ପରିଚିତ । କେବଳ ସୀତାକାନ୍ତ ମହାପାତ୍ରଙ୍କୁ ବାଦ୍ ଦେଲେ ଅନ୍ୟ କୌଣସି ପ୍ରମୁଖ ଓଡ଼ିଆ କବିଙ୍କର ରଚନାର ଏଭଳି ପର୍ଯ୍ୟାପ୍ତ ଇଂରାଜୀ ଅନୁବାଦ ହୋଇଛି ବୋଲି ମନେ ହୁଏ ନାହିଁ । ଆଶା କରିବା ସ୍ୱାଭାବିକ, ଅଚିରେ ଅନ୍ୟାନ୍ୟ ପ୍ରମୁଖ ଓଡ଼ିଆ କବିମାନଙ୍କର ରଚନାର ସଫଳ ଇଂରାଜୀ ଅନୁବାଦ ଅଧିକ ସଂଖ୍ୟାରେ ପ୍ରକାଶିତ ହେବ ।

ଜଗନ୍ନାଥ ପ୍ରସାଦଙ୍କ କବିତା ସଂପର୍କରେ ଦେଶବିଦେଶରୁ ବହୁ ସମାଲୋଚକ ଆଲୋଚନା କରିଛନ୍ତି । ସେମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ, ମୁଲ୍କ୍ ରାଜ୍ ଆନନ୍ଦ (ଭାରତୀୟ ଇଂରାଜୀ ଔପନ୍ୟାସିକ), ନିସିମ୍ ଏଜେକିଏଲ୍ (ଭାରତୀୟ ଇଂରାଜୀ କବି), କେକି ଦାରୁୱାଲା (ଭାରତୀୟ ଇଂରାଜୀ କବି), ମୀନାକ୍ଷୀ ମୁଖାର୍ଜୀ (ଭାରତୀୟ ଇଂରାଜୀ ପ୍ରଫେସର୍ ଓ ସମାଲୋଚକ), ଗୌର କିଶୋର ଦାସ (ଇଂରାଜୀ ପ୍ରଫେସର୍), ମେରୀ ଓକନର୍ (କବି ଓ ସମାଲୋଚକ), ସୌରୀନ୍ଦ୍ର କୁମାର ବାରିକ, ସଚ୍ଚି ରାଉତରାୟ, ହରପ୍ରସାଦ ଦାସ ପ୍ରମୁଖ ।

(ୱାର୍ଡ୍‌ସ୍ ଅନ୍ କ୍ୟାନ୍‌ଭାସ୍ ଦ୍ରଷ୍ଟବ୍ୟ)

ଜଣେ କବିଙ୍କ ଜୀବନ ସହିତ ପରିଚିତ ହେଲେ ତାଙ୍କ କବିତାକୁ ଯେ ବୁଝିହେବ, ଏପରି ନୁହେଁ । କାରଣ କବିସତ୍ତା ଏକ ରହସ୍ୟ; ହୁଏତ କବି ନିଜେ ଏହା ବୁଝି ନ ଥାଏ । ତେବେ, କବି ଜଗନ୍ନାଥ ପ୍ରସାଦ ତାଙ୍କର କେତୋଟି କବିତା ରଚନା କରିଛନ୍ତି 'କବିତା' ସଂପର୍କରେ । ଯେପରି – ପରବର୍ତ୍ତୀ କବିତା (ଆହ୍ନିକ), କବିତାର ଜନ୍ମ (ସ୍ଥିରଚିତ୍ର), କବି (ସଚରାଚର), କବିତାର ଦେଶ (ସ୍ମୃତିର ସହର), କବିତାର ଅର୍ଥ (ପରିକ୍ରମା) ଇତ୍ୟାଦି । ଏ କବିତାଗୁଡ଼ିକ ପାଠ କଲେ ଜଗନ୍ନାଥ ପ୍ରସାଦଙ୍କର କବିତା ପ୍ରତି ଆଭିମୁଖ୍ୟ କେତେକାଂଶରେ ବୁଝି ହୁଏ । ବୁଝି ହୁଏ – କବିଭାବରେ ସେ ଯେପରି ତନ୍ମୟ, ସେହିପରି ମଧ୍ୟ ନିରାସକ୍ତ । ଏଠାରେ ଗୋଟିଏ ମାତ୍ର କବିତା ଉଦ୍ଧାର କରା ଯାଉଛି :

## କବିତାର ଦେଶ

କବିତାର ପ୍ରଥମ ଧାଡ଼ିଟି ସେତିକି କଷ୍ଟସାଧ୍ୟ
ଯେତିକି ପ୍ରେମର ପ୍ରଥମ ପଦକ୍ଷେପ ନେବା

କବିତାର ଦେଶ ଭିତରେ ପଶିବାକୁ ହୁଏ
ମନସ୍ଥିର କରି ଜୀବନ ମରଣର ପଣ ନେଇ
ପ୍ରସ୍ତୁତି ପର୍ବର ପ୍ରଥମ ପାଦ ପକାଇବାକୁ ହୁଏ
ଚାରିପାଖର ପ୍ରବେଶ ନିଷେଧର ଫଳକକୁ ଭାଙ୍ଗି

ତାପରେ କିନ୍ତୁ ହଜିଯାଏ ପଥ ଓ ସଂକଳ୍ପ
ଦ୍ୱୀପାନ୍ତରରେ ନିର୍ବାସିତ ଅଭିପ୍ରାୟମାନଙ୍କ ଭଳି
ଯାବଜ୍ଜୀବନ ଘୂରି ବୁଲିଥାଏ ବାରବୁଲା ମନ
ବାଟ ଅବାଟର କଣ୍ଟାଲଟାରେ ଛାଟିପିଟି ହୋଇ
ଶବ୍ଦ ଓ ସଂପର୍କକୁ ଯୋଡ଼ି ରଖିବାର ସାଧନ ଖୋଜି

କବିତାରେ ସବୁକିଛି ସମ୍ଭବ ଓ ସାଧ୍ୟ ମନେ ହୁଏ
ପ୍ରେମର ସର୍ବଶକ୍ତିମାନ ସମ୍ଭାବନାମାନଙ୍କ ଭଳି
ଆରବ୍ୟ ରଜନୀର ଆଜ୍ଞାବହ ଭୃତ୍ୟ ଯେପରି
କଲମ ମୁନରୁ ବାହାରି ଆସି ଆଦେଶ ମାଗିବ
ବର୍ଣ୍ଣମାଳାର ଗହ୍ୱରରୁ ଦୁର୍ଲ୍ଲଭ ଶବ୍ଦମାନଙ୍କୁ ଆଣି
ଅର୍ଥ ବିନ୍ୟାସରେ ପଂକ୍ତିକ୍ରମେ ସଜାଇ ଦେବାର
ଇଚ୍ଛାର ଏକାଗ୍ରତା ସେଥିରେ ଆଣିଦେବ ମାର୍ମିକ ବ୍ୟଞ୍ଜନା
ଚିରି ଦେଇଥିବା ପୁରୁଣା ଚିଠିରେ ବାକ୍ୟାଂଶମାନ
ଆଖି ଓଠ ମୁହଁ ହୋଇ ସ୍ୱୀକାରର ସମ୍ମତି ଜଣାଇବେ
ଭାବ ଓ ଭାବନାର ଛନ୍ଦସବୁ ମୃତ୍ୟୁକୁ ଲଂଘିଯିବେ
ପ୍ରେମ ଅପ୍ରେମର କ୍ଷୁରଧାର ଉପର ଦେଇ

ଠିକ କବିତାର ଦେଶ ଭଳି ପ୍ରେମର ପରିସର
ଉଦ୍‌ବେଗରେ ଭର୍ତ୍ତି ହେଉଥାଏ ବୟସର ଖାଲି ପୃଷ୍ଠାସବୁ
ଉପସଂହାର ଆଡ଼କୁ ଟାଣି ହୋଇ ଯାଆନ୍ତି କବି ଓ ପ୍ରେମିକ
ଉପଯୁକ୍ତ ଶେଷ କଥାଟି ଖୋଜି ନ ପାଉଥିବାର
ଆଜୀବନ ଅସ୍ଥିରତା ଅସ୍ୱସ୍ତି ଓ ହା ହୁତାଶରେ

(ସ୍ମୃତିର ସହର, ୧୯୯୫)

# କଥାଯାତ୍ରା



ମୁଲ୍କ ରାଜ ଆନନ୍ଦଙ୍କ ରେଖାଙ୍କନ

**ଜ**ଗନ୍ନାଥ ପ୍ରସାଦଙ୍କ ପ୍ରଥମ କବିତା ସଂକଳନ 'ସ୍ତବକ' ପ୍ରକାଶିତ ହୋଇଥିଲା ୧୯୫୧ରେ; ପ୍ରଥମ ଏକକ ଚିତ୍ର ପ୍ରଦର୍ଶନୀ ଅନୁଷ୍ଠିତ ହୋଇଥିଲା ଭୁବନେଶ୍ୱରରେ ୧୯୭୧ରେ; କିନ୍ତୁ ପ୍ରଥମ କ୍ଷୁଦ୍ରଗଳ୍ପ ସଂକଳନ 'ଭବନାଥ ଓ ଅନ୍ୟମାନେ' ପ୍ରକାଶିତ ହେଲା ୧୯୮୨ରେ । ଏ ସଂକଳନର ପ୍ରଥମ ଗଳ୍ପ 'ଶବ୍ଦଭେଦ' ଲିଖିତ ହୋଇଥିଲା ୧୯୮୦ରେ ।

କବିତା ରଚନା ଓ ଚିତ୍ରକଳାରୁ ଜଗନ୍ନାଥ ପ୍ରସାଦ ଆରମ୍ଭ କରିଥିଲେ ତାଙ୍କର ସୃଜନ ଯାତ୍ରା । ଆପାତତଃ ଗଳ୍ପ/ଉପନ୍ୟାସ ରଚନାରେ ସେ ଆଗ୍ରହୀ ନ ଥିଲେ । ଏହାର ନିର୍ଦ୍ଦିଷ୍ଟ କାରଣଟିଏ ନିରୂପଣ କରିବା ସହଜ ନୁହେଁ; ହୁଏତ ଆବଶ୍ୟକ ମଧ୍ୟ ନୁହେଁ । ତେବେ ଦିଲ୍ଲୀ ଅବସ୍ଥାନ କାଳରେ ପ୍ରଖ୍ୟାତ ଭାରତୀୟ ଇଂରାଜୀ ଲେଖକ ମୁଲ୍କ୍ ରାଜ୍ ଆନନ୍ଦଙ୍କ ସହିତ ସଂପର୍କ ସ୍ଥାପିତ ହେବା ପରେ ଜଗନ୍ନାଥ ପ୍ରସାଦ କ୍ଷୁଦ୍ରଗଳ୍ପ ରଚନାରେ ଆଗ୍ରହୀ ହୋଇଥାଇ ପାରନ୍ତି । ଏହିପରି ମନ୍ତବ୍ୟଟିଏ ପ୍ରଦାନ କରିଛନ୍ତି ସୁମନ୍ୟୁ ଶତପଥୀ (ୱାର୍ଡ୍‌ସ୍ ଅନ୍ କ୍ୟାନ୍‌ଭାସ୍ ଦେଖନ୍ତୁ) ।

ତେବେ, ଏ ପ୍ରସଙ୍ଗରେ କବି ଓ ଲେଖକ ମନୁ ଦାଶଙ୍କ ସ୍ମୃତିଚାରଣ ଉଲ୍ଲେଖଯୋଗ୍ୟ ମନେ ହୁଏ :

'ବୋଧହୁଏ ୧୯୮୦ ମସିହାର ଘଟଣା । ପୂଜା ସମୟ ସନ୍ନିକଟ । ସ୍ୱର୍ଗତ ଜଗଦୀଶ ପାଣିଙ୍କ ପ୍ରତିଷ୍ଠିତ କ୍ୱାଲିଟି ପ୍ରେସ୍‌ରେ ବସିଥାଏ । ବିଭିନ୍ନ ସାହିତ୍ୟିକଙ୍କ ସହ ଆଳାପ ଆଲୋଚନା ପାଇଁ ଏହା ଥିଲା ଭୁବନେଶ୍ୱରର ଏକ ସୁନିର୍ବାଚିତ ସ୍ଥାନ । ତା' ଛଡ଼ା ଏହି ସଂସ୍ଥାର ମାଲିକ, ସମାବେଶ ଭଳି ଏକ ସମ୍ଭ୍ରାନ୍ତ ପତ୍ରିକା ପ୍ରତିଷ୍ଠାତା ସଂପାଦକ ସ୍ୱର୍ଗତ ଜଗଦୀଶ ପାଣିଙ୍କ ଅମାୟିକ ବ୍ୟବହାର ମୋ'ଭଳି ତରୁଣଙ୍କ ପାଇଁ ଆଶ୍ୱାସନା ଓ ପ୍ରେରଣାର ଉତ୍ସ ଥିଲା । ... ମଧ୍ୟାହ୍ନ ବେଳକୁ ସେଦିନର

MULK RAJ ANAND

Untouchable

with a Preface by
E. M. FORSTER
and an Afterword by
SAROS COWASJEE



ARNOLD-HEINEMANN

ଡାକ ଆସିଲା । ପୋଷ୍ଟମ୍ୟାନ୍ ହାତରୁ ଚିଠିପତ୍ର ନେଇ ବନ୍ଧୁ ଅସିତ ମହାନ୍ତି ଗୋଟି ଗୋଟି କରି ଖାମ୍ ଖୋଲୁଥାନ୍ତି । ବିଭିନ୍ନ ଲେଖକଙ୍କଠାରୁ ପୂଜାସଂଖ୍ୟା ପାଇଁ ଲେଖାମାନ ଆସିଥାଏ 'ସମାବେଶ'ରେ ସ୍ଥାନିତ ହେବାକୁ । ହଠାତ୍ ଲେଖାଟିଏ ପଢ଼ି ସେ ଆନନ୍ଦରେ ନାଚି ଉଠିଲେ ଓ ଖବରଟି ଜଣାଇବା ପାଇଁ ଦୌଡ଼ି ଆସିଲେ ଜଗଦୀଶ ବାବୁଙ୍କ ପାଖକୁ । ପରେ ପରେ ମୋ ହାତକୁ ବଢ଼ାଇ ଦେଲେ ଜଗନ୍ନାଥ ପ୍ରସାଦ ଦାସଙ୍କ ଦ୍ୱାରା ଲିଖିତ ପ୍ରଥମ ଗଳ୍ପ 'ଶବ୍ଦ ଅଥବା ଭବନାଥ କାହିଁକି ପାଗଳ ହୋଇଗଲା ?' ବିଷୟବସ୍ତୁ, ଶୈଳୀ ଓ ନାମକରଣରେ ସ୍ୱତନ୍ତ୍ର ଥିଲା ଏଇ ଗଳ୍ପଟି । ଯେତେଦୂର ମନେପଡୁଛି, ସେ ବର୍ଷର ସବୁଠୁ ଚର୍ଚ୍ଚିତ ଗଳ୍ପ ଥିଲା ଏଇ ଗଳ୍ପଟି ।'

(ଅନୁପମ ଭାରତ, ୨୪.୦୬.୧୯୯୮)

ଗଳ୍ପ ରଚନାର କାରଣ ବା ପରିସ୍ଥିତି ଯାହା ବି ହେଉ, ଜଗନ୍ନାଥ ପ୍ରସାଦ ଆଧୁନିକ ଓଡ଼ିଆ କଥା ସାହିତ୍ୟର ଅନ୍ୟତମ ନିର୍ମାତା, ଏହା ଅବଶ୍ୟ ସ୍ୱୀକାର୍ଯ୍ୟ । ତାଙ୍କ ପ୍ରକାଶିତ ପ୍ରାୟ ସମସ୍ତ ଗଳ୍ପ ସଂକଳନ 'ଗଳ୍ପ ସମଗ୍ର : କଥାଯାତ୍ରା'ରେ ସଂକଳିତ । ସମୟକ୍ରମରେ ଏହି ସଂକଳନ ଗୁଡ଼ିକ ହେଲା, 'ଭବନାଥ ଏବଂ ଅନ୍ୟମାନେ' (୧୯୮୨), 'ଦିନଚର୍ଯ୍ୟା' (୧୯୮୩), 'ଆମେ ଯେଉଁମାନେ' (୧୯୮୬), 'ସାକ୍ଷାତ୍‌କାର' (୧୯୮୭), 'ପ୍ରିୟ ବିଦୂଷକ' (୧୯୯୨) ଏବଂ 'ଶେଷ ପର୍ଯ୍ୟନ୍ତ' (୧୯୯୫) । ୨୦୦୯ରେ ତାଙ୍କର ତିନୋଟି ଗଳ୍ପର ସଂକଳନ 'ଇନ୍ଦ୍ରଧନୁ, ଆଖି ଓ କବିତାର ଦୀର୍ଘ ଜୀବନ' ପ୍ରକାଶିତ ହୋଇଛି । 'ପ୍ରିୟ ବିଦୂଷକ' ପାଇଁ ସେ ଲାଭ କରିଛନ୍ତି ସାରଳା ପୁରସ୍କାର । ତାଙ୍କଦ୍ୱାରା ଏ ଯାଏଁ ପ୍ରକାଶିତ ଗଳ୍ପର ସଂଖ୍ୟା ଚଉସ୍ତରି ।

ଜଗଦୀଶ ପାଣିଙ୍କ ପତ୍ର

୨୦୦୮ରେ ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ ମୋତେ ଅନୁରୋଧ କଲେ – ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ କ୍ଷୁଦ୍ରଗଳ୍ପର ସଂକଳନଟିଏ ପ୍ରସ୍ତୁତ କରିବା ପାଇଁ । କେଉଁ ଗାଳ୍ପିକମାନଙ୍କ ରଚନା ଏଥିରେ ସ୍ଥାନିତ କରାଯିବ ଏବଂ ସେମାନଙ୍କର କେଉଁ ନିର୍ଦ୍ଦିଷ୍ଟ ଗଳ୍ପ ସ୍ଥାନିତ କରାଯିବ – ଏହା ସ୍ଥିର କରିବା ମୋ' ପକ୍ଷରେ ଥିଲା ଏକ ଦୁରୂହ ସମସ୍ୟା । ଏ ସଂପର୍କରେ ପାଠକପାଠିକାମାନଙ୍କ ମତାମତ ଲୋଡ଼ିଲି । ଏକାଧିକ ପାଠକ ପ୍ରସ୍ତାବ ଦେଲେ, ଜଗନ୍ନାଥ ପ୍ରସାଦଙ୍କ 'ଲୋକ ସଂସ୍କୃତି' ଗଳ୍ପଟି ମୋ ସଂକଳନରେ ଅନ୍ତର୍ଭୁକ୍ତ କରାଯାଉ ।

ଅକ୍ଷୟ ମୋହନ ପଟ୍ଟନାୟକଙ୍କ ପତ୍ର ୧୯୮୦

'ଲୋକ ସଂସ୍କୃତି' ଗଳ୍ପଟି ପଢ଼ି ମୋର ମନେହେଲା, ଏହା ଯଥାର୍ଥରେ ତାଙ୍କର ଏକ ପ୍ରତିନିଧିସ୍ଥାନୀୟ ଗଳ୍ପ । ଏ ଗଳ୍ପଟି ତାଙ୍କର 'ସାକ୍ଷାତ୍କାର' ସଂକଳନରେ ସ୍ଥାନିତ । ମାତ୍ର ଦଶ ପୃଷ୍ଠାରେ ଲିଖିତ ଏ ଗଳ୍ପଟି ସ୍ୱାଧୀନତା ପୂର୍ବବର୍ତ୍ତୀ ଓ ପରବର୍ତ୍ତୀ ଓଡ଼ିଶା ତଥା ଭାରତର ବଦଳି ଯାଉଥିବା ସାଂସ୍କୃତିକ ଦୃଶ୍ୟପଟର ଏକ ନିଖୁଣ ଚିତ୍ର । ସଂକ୍ଷେପରେ ଗଳ୍ପଟି ଏହିପରି :



ନୀଳମଣି ସେନାପତି, ଆଇ.ସି.ଏସ୍‌ଙ୍କ ସହିତ ୧୯୭୨ ('ଶେଷ ପର୍ଯ୍ୟନ୍ତ' ଗଳ୍ପର ନାୟକ ?)

ଲେଖକ ନିଜ ପୂର୍ବପୁରୁଷଙ୍କ ଗାଁ'ରେ ପହଞ୍ଚିଛନ୍ତି ପ୍ରାୟ ପଚିଶି ବର୍ଷ ପରେ । ଶୈଶବରେ ଅବଶ୍ୟ ତାଙ୍କର ଗାଁ ସହିତ ସଂପର୍କ ଥିଲା; ବର୍ତ୍ତମାନ ତାହା ନାହିଁ । ତେବେ, ଗାଁ'ର ବହୁ ମଧୁର ସ୍ମୃତି ତାଙ୍କୁ ଆଚ୍ଛନ୍ନ କରି ରଖିଛି ଆଜୀବନ । ସେଥିମଧ୍ୟରୁ ଗୋଟିଏ ହେଉଛି ପାରଂପରିକ ବାଘନାଚ ।

ଗାଁ'ର ମାନଚିତ୍ର ବଦଳି ଯାଇଛି ଏହା ଭିତରେ । ଟ୍ୟାକ୍‌ସିରେ ସେ ସିଧା ପହଞ୍ଚିଲେ ତାଙ୍କ ନିଜ ଘରେ – ଘରଟି ବି ବଦଳି ଯାଇଛି । ଘରଟି ଚୂନ ଧଉଳା ହୋଇଛି; ସାମ୍‌ନାରେ ସାଇନ୍‌ବୋର୍ଡ୍‌ଟିଏ – ବ୍ୟାଘ୍ରନୃତ୍ୟ ଅନୁଷ୍ଠାନ । ତାଙ୍କର ବାଲ୍ୟବନ୍ଧୁ ଗୋପାଳ ବର୍ତ୍ତମାନ ସେ ଅନୁଷ୍ଠାନର ଗୁରୁ । ଓଡ଼ିଶା – ଏପରିକି ଭାରତ ବାହାରୁ କେତେଜଣ ନୃତ୍ୟ ବିଶାରଦ ଏହା ମଧ୍ୟରେ ବ୍ୟାଘ୍ରନୃତ୍ୟ ଅନୁଷ୍ଠାନ ପରିଦର୍ଶନରେ ଆସିଛନ୍ତି; ବାଘନାଚ ଏକ କ୍ଲାସିକାଲ୍ ନୃତ୍ୟର ମର୍ଯ୍ୟାଦା ଲାଭ କରିବାକୁ ଯାଉଛି ହୁଏତ । ଲେଖକଙ୍କୁ ସାକ୍ଷାତ୍ କରିବାକୁ ଆସିଲେ ଜଣେ ଗୋରାଲୋକ; ହାତରେ କ୍ୟାମେରା ଓ ଟେପ୍ ରେକର୍ଡର୍ ।

ଲେଖକ ତାଙ୍କ ଶୈଶବର ବାଘନାଚ, ଗାଁ'ର ନିରୀହ ଆନନ୍ଦ ଓ ବାତାବରଣ ସ୍ମରଣ କରିଛନ୍ତି । ଅଣନିଶ୍ୱାସୀ ହୋଇ ଯଥାଶୀଘ୍ର ଫେରି ଆସିଛନ୍ତି ନିଜେ ରହୁଥିବା ସହରକୁ ।

ଗଳ୍ପଟିର ବିଷୟବସ୍ତୁ ଅନୁଧ୍ୟାନ କଲେ ମନେହୁଏ, ଲେଖକ ଚାହିଁଥିଲେ ଏହାକୁ ଏକ ଉପନ୍ୟାସର ରୂପ ପ୍ରଦାନ କରିପାରିଥାନ୍ତେ । ଏ ଗଳ୍ପର ଏକ ଟେଲିଫିଲ୍ମ ଅବଶ୍ୟ ପ୍ରସ୍ତୁତ ହୋଇଛି ।

ଜଗନ୍ନାଥ ପ୍ରସାଦଙ୍କ କବିତା ଓ କଳା ସମାଲୋଚନା ଗ୍ରନ୍ଥମାନଙ୍କ ତୁଳନାରେ ତାଙ୍କ କ୍ଷୁଦ୍ରଗଳ୍ପମାନଙ୍କର ପର୍ଯ୍ୟାପ୍ତ ଆଲୋଚନା ହୋଇ ନାହିଁ । କିନ୍ତୁ ତାଙ୍କ କ୍ଷୁଦ୍ରଗଳ୍ପଗୁଡ଼ିକର ଭୂମି ଓ ବିସ୍ତୃତି ଯଥାର୍ଥରେ ବ୍ୟାପକ ଓ ଏଥିରୁ ତାଙ୍କର ଜୀବନ ଓ ସମୟ ପ୍ରତି ଦୃଷ୍ଟିଭଙ୍ଗୀର ସ୍ପଷ୍ଟ ପରିଚୟ ମିଳେ ।

ଜଗନ୍ନାଥ ପ୍ରସାଦଙ୍କ 'ପ୍ରିୟ ବିଦୂଷକ' ଗଳ୍ପଟିର ଉଲ୍ଲେଖ ପ୍ରାସଙ୍ଗିକ ମନେହୁଏ । ଏ ଗଳ୍ପଟିର ପାତ୍ରପାତ୍ରୀ ଜଣେ ଲେଖକ ଓ ତା'ର ଚରିତ୍ରମାନେ । ଲେଖକ ତା'ର ଚରିତ୍ରମାନଙ୍କୁ ସୃଷ୍ଟି କରେ । ଅଥଚ ଚରିତ୍ରମାନେ ତା' ଅଧୀନରେ ରହନ୍ତି ନାହିଁ – ଜୀବନ୍ୟାସ ଲାଭ କରି ନିଜ ନିଜର ସ୍ୱତନ୍ତ୍ର ସତ୍ତା ଜାହିର୍ କରନ୍ତି । ଏହାର ପରିଣତି ହୁଏ – ବିଚରା ଲେଖକ ନିଜକୁ ବିଦୂଷକଟିଏ ବୋଲି ବିଚାର କରିବାରେ ।

ଏହି କ୍ଷୁଦ୍ରଗଳ୍ପଟିରୁ ଜଗନ୍ନାଥ ପ୍ରସାଦଙ୍କ ଲେଖକୀୟ ଦର୍ଶନର କିଞ୍ଚିତ୍ ସୂଚନା ମିଳେ । ଜୀବନ ପ୍ରତି – କଳା ପ୍ରତି ଅନାସକ୍ତ ରହିବା ହୁଏତ ତାଙ୍କର ଏକ ବୈଶିଷ୍ଟ୍ୟ । ବ୍ୟକ୍ତିଗତଭାବରେ ତାଙ୍କୁ ନିକଟରୁ ଜାଣିଥିବା ଅନେକେ ବିଶ୍ୱାସ କରନ୍ତି, ସାଧାରଣ ଜୀବନରେ ସେ କୌଣସିଥିରେ ବିଚଳିତ ହୋଇ ପଡ଼ନ୍ତି ନାହିଁ; ଜୀବନ ଯେଉଁପରି, ସେହିପରି ତାକୁ ବିନା ଅଭିଯୋଗରେ ଗ୍ରହଣ କରି ନିଅନ୍ତି । ତାଙ୍କ କ୍ଷୁଦ୍ରଗଳ୍ପର ସମାଲୋଚକମାନେ ତାଙ୍କର ଏହି ଗୁଣଟି ପ୍ରତି ଆମର ଦୃଷ୍ଟି ଆକର୍ଷଣ କରିଛନ୍ତି । ଦାଶରଥି ଦାସଙ୍କ ଭାଷାରେ :




'ଶ୍ରୀ ଦାସ ଚରିତ୍ର ପ୍ରତି ନିରାସକ୍ତ, ପକ୍ଷପାତ ଶୂନ୍ୟ; ଆବେଗ ବିଷୟରେ ବରଂ ନିର୍ବିକାର । ଅଧିକନ୍ତୁ ଶିଳ୍ପୀଭାବରେ ନିର୍ମମ ଭାବରେ ପରିବେଶ ସଚେତନ । ଆମ ସମୟର ବାସ୍ତବତାକୁ ସେ ଯେପରି ଦେଖିଛନ୍ତି, ଅବିକଳ ସେମିତି ଆଙ୍କିବାକୁ ଚାହିଁଛନ୍ତି । ଏହାର ଅର୍ଥ ନୁହେଁ ଯେ, ସେ ଜୀବନର ଫଟୋ ଉଠାଇଛନ୍ତି । ବରଂ ତାଙ୍କର ବିପୁଳ ଜୀବନନିଷ୍ଠ ଅଭିଜ୍ଞତା କଳ୍ପନା ସହାୟତାରେ ସଜୀବ ଓ ବିଶ୍ୱାସଯୋଗ୍ୟ ହୋଇ ଉଠିଛି । ଜୀବନ ଯେମିତି, ସେମିତି ହେବାର ଅଧିକାର ତା'ର ଅଛି । ଶ୍ରୀ ଦାସ କେଉଁଠି କିଛି ରଙ୍ଗ ଲଗାଇ ନାହାନ୍ତି କି ନାଟକୀୟତା ସୃଷ୍ଟି କରି ନାହାନ୍ତି । ଆବେଗ ପ୍ରବଣତାର କଠୋର ନିୟନ୍ତ୍ରଣ ଓ ଭାବାର୍ଦ୍ରତା ବର୍ଜନ ତାଙ୍କର ମୁଖ୍ୟ ବିଶେଷତ୍ୱ ।' (ସାଂପ୍ରତିକ ଗ୍ରନ୍ଥ ସମୀକ୍ଷା–୨, ଅଗଷ୍ଟ,୧୯୮୯)

ଡେକାନ୍ ହେରାଲଡ୍ (୯ ମେ,୨୦୦୪)ରେ ପ୍ରକାଶିତ 'ପ୍ରିୟ ବିଦୂଷକ' (ଡିଅର୍ ଜେଷ୍ଟର୍) ଗଳ୍ପ ସଂକଳନ ସଂପର୍କରେ ରଶ୍ମି ବାସୁଦେବ ମନ୍ତବ୍ୟ ଦେଇଛନ୍ତି, 'ବିଷାଦବୋଧ ଜଗନ୍ନାଥ ପ୍ରସାଦଙ୍କ ଗଳ୍ପଗୁଡ଼ିକୁ ଆଚ୍ଛନ୍ନ କରି ରଖେ – ଯେପରି କନରାଡ୍‌ଙ୍କ ଉପନ୍ୟାସ 'ହାର୍ଟ୍ ଅଫ୍ ଡାର୍କନେସ୍' । ଏହି ବିଷାଦବୋଧରେ ଅଣନିଃଶ୍ୱାସୀ ହୋଇ ଆପଣ ଜୀବନ ଓ ବଞ୍ଚିବାର ଉଦ୍ଦେଶ୍ୟ ସଂପର୍କରେ ସନ୍ଦିହାନ ହୋଇ ପଡ଼ନ୍ତି । ଅଥଚ ଆପଣଙ୍କ ନିକଟରେ ଅଭିଯୋଗ କରିବାର କିଛି ନ ଥାଏ । ଲେଖକ ଯେପରି ତାହା ହିଁ ଚାହାନ୍ତି ।'




ଏହି ଦୁଇ ସମାଲୋଚକଙ୍କ ମନ୍ତବ୍ୟରୁ ବୁଝିନେବା ଉଚିତ ନୁହେଁ, ଜଗନ୍ନାଥ ପ୍ରସାଦଙ୍କ ଗଳ୍ପସବୁର ଏକମାତ୍ର ସ୍ୱର ବିଷାଦ, ନୈରାଶ୍ୟ ବା ମୋହଭଙ୍ଗ । ଏହା ତାଙ୍କର ମୁଖ୍ୟ ସ୍ୱର ହୋଇପାରେ । ତାଙ୍କର ଅଧିକାଂଶ ଚରିତ୍ର ନଗରବାସୀ, ମଧ୍ୟବୟସ୍କ, ମଧ୍ୟବର୍ଗୀୟ ମଣିଷ । ସ୍ୱାଭାବିକଭାବରେ ତେଣୁ ଦୁଃଖ ଓ ହତାଶବୋଧ ତାଙ୍କ ଚରିତ୍ରମାନଙ୍କ ମାନସିକତାକୁ ଆବୋରି ରଖେ । କିନ୍ତୁ କେବେ କେବେ ଜଗନ୍ନାଥ ପ୍ରସାଦ ଫେରି ଯାଆନ୍ତି ପଛରେ ଛାଡ଼ି ଆସିଥିବା ଶୈଶବର ନିରୀହ ଜୀବନକୁ, ଯେପରି 'ଲୋକ ସଂସ୍କୃତି'ରେ । ପୁରୁଣା ସମୟ ପ୍ରତି ତାଙ୍କର ମୋହ ଉଙ୍କିମାରେ ନିଶ୍ଚୟ । କିନ୍ତୁ ସେ ଅଧିକ ସଂପୃକ୍ତ ଆଜିର ବାସ୍ତବତା ସହିତ – ଯାହା ଘଟୁଛି, ତାହା ସହିତ ।

ଜଗନ୍ନାଥ ପ୍ରସାଦଙ୍କ ଆଉ ଏକ ସ୍ୱାତନ୍ତ୍ର୍ୟ, ତାଙ୍କର ଶ୍ଳେଷ ବା ଆଇରନି – ଜୀବନ ଓ ସମୟ ପ୍ରତି । ଶାମ୍‌ସ୍ ଆଫିଫ୍ ସିଦ୍ଦିକିଙ୍କ ଭାଷାରେ, 'ଜଗନ୍ନାଥ ପ୍ରସାଦଙ୍କ ଗଳ୍ପଗୁଡ଼ିକ ଗଢ଼ଣରେ ନିହିତ ଏକ ଆଇରନି ବା ଶ୍ଳେଷଭାବ ବା ବିରୋଧଭାସ... ସେଥିପାଇଁ ଜୀବନ ପ୍ରତି ଏକ ସହଜ ହାଲ୍‌କା ମନୋବୃତ୍ତି ମଧ୍ୟ ତାଙ୍କ ରଚନାରେ ବାରି ହୁଏ ।

(ଅପ୍ରକାଶିତ ଆଲୋଚନା)

ଜଗନ୍ନାଥ ପ୍ରସାଦ ୧୯୮୨ ରୁ ୨୦୦୯ – ଏହି ଦୀର୍ଘ ସମୟ ଗଳ୍ପ ରଚନା କରି ଆସିଛନ୍ତି । କେବଳ କବିତାକୁ ବାଦ୍ ଦେଲେ କଳା ବା ସାହିତ୍ୟର ଅନ୍ୟ କୌଣସି ବିଭାଗରେ ସେ ଏତେ ସମୟ କାର୍ଯ୍ୟ କରି ନାହାନ୍ତି ।

କ୍ଷୁଦ୍ରଗଳ୍ପ ଆଧୁନିକ ଓଡ଼ିଆ ସାହିତ୍ୟର ଏକ ସମୃଦ୍ଧ ବିଭାଗ – ନାଟକ ବା କଳା ସମାଲୋଚନା କ୍ଷେତ୍ରରେ ଓଡ଼ିଶାର କୃତିତ୍ୱ ଅପେକ୍ଷାକୃତ ଦୁର୍ବଳ । କଥାଶିଳ୍ପୀଭାବରେ ଜଗନ୍ନାଥ ପ୍ରସାଦ ଉଭୟ ପ୍ରବୀଣ ଓ ତରୁଣମାନଙ୍କ ସହିତ ସମାନ୍ତରାଳତା ରକ୍ଷା କରିଛନ୍ତି । କିଶୋରୀ ଚରଣ ଦାସ, ଶାନ୍ତନୁ କୁମାର ଆଚାର୍ଯ୍ୟ, କୃଷ୍ଣ ପ୍ରସାଦ ମିଶ୍ର, ଅଖିଳମୋହନ ପଟ୍ଟନାୟକ, ମନୋଜ ଦାସଙ୍କଠାରୁ ଆରମ୍ଭ କରି ଯଶୋଧାରା ମିଶ୍ର, ଦେବବ୍ରତ ମଦନରାୟ, ଗୌରହରି ଦାସଙ୍କ ପର୍ଯ୍ୟନ୍ତ – ଦୁଇ ପିଢ଼ିର ସେ ସମକାଳୀନ । କଥାଶିଳ୍ପୀଭାବରେ ତାଙ୍କର ସଫଳତା, ତେଣୁ କଳା ସମାଲୋଚକ ବା ନାଟ୍ୟକାରଭାବରେ ସଫଳତାଠାରୁ ଅଧିକ ସାଧନା, ନିଷ୍ଠା ଓ ଆୟାସ ଉପରେ ଆଧାରିତ ବୋଲି କୁହାଯାଇପାରେ ।

ଏହି ସମୟ ଅର୍ଥାତ୍, ଜଗନ୍ନାଥ ପ୍ରସାଦଙ୍କ କ୍ଷୁଦ୍ରଗଳ୍ପ ରଚନାକାଳ – ଓଡ଼ିଶା ଓ ଓଡ଼ିଆ ସମାଜର ଏକ ଘଡ଼ିସନ୍ଧି କାଳ । ବ୍ୟାପକ ଶିକ୍ଷା – ବିଶେଷତଃ ନାରୀଶିକ୍ଷାର ପ୍ରସାର, ଶିଳ୍ପାୟନ ତଥା ନଗରୀକରଣ, ଓଡ଼ିଆ ସମାଜର ଜୀବନଶୈଳୀରେ ବିପୁଳ ପରିବର୍ତ୍ତନ, ସାଂସ୍କୃତିକ ଜୀବନରେ ଇଂରାଜୀ ଭାଷା ଓ ପାଶ୍ଚାତ୍ୟ ଭାବଧାରାର ଅନୁପ୍ରବେଶ – ଏସବୁକୁ ନିଜ କ୍ଷୁଦ୍ରଗଳ୍ପଗୁଡ଼ିକରେ ରୂପଦାନ କରିଛନ୍ତି ଜଗନ୍ନାଥ ପ୍ରସାଦ । ସେ ଆମ ସମୟର ଅନ୍ୟତମ ପ୍ରମୁଖ ଭାଷ୍ୟକାର – ତାଙ୍କ କ୍ଷୁଦ୍ରଗଳ୍ପସବୁ ଆମ ସମାଜର ମାନସିକତାର ଏକ ସ୍ୱଚ୍ଛ ଆଲେଖ୍ୟ ।

ଏଠାରେ 'ସ୍ୱଚ୍ଛ' ଶବ୍ଦଟି ମୁଁ ଏକ ବିଶେଷ ଅର୍ଥରେ ଉଲ୍ଲେଖ କରୁଛି । ଜଗନ୍ନାଥ ପ୍ରସାଦଙ୍କ କ୍ଷୁଦ୍ରଗଳ୍ପଗୁଡ଼ିକର ରଚନାଶୈଳୀ ମାର୍ଜିତ, ସାବଲୀଳ, ଅନେକ ସମୟରେ ସିଧାସଳଖ । ଗଳ୍ପଗୁଡ଼ିକରେ ଭାଷାଶୈଳୀର କାରୁକାର୍ଯ୍ୟ ଅପେକ୍ଷା ଜୀବନର ଗଭୀରତା ଓ ସୂକ୍ଷ୍ମ ସଂଘାତ ଉପରେ ଗୁରୁତ୍ୱ ଅଧିକ । ଜୀବନ ପ୍ରତି ତାଙ୍କର ଦୃଷ୍ଟି ବହୁ ସମୟରେ ଅନ୍ତର୍ମୁଖୀ । ବାହ୍ୟ ଘଟଣା ବା ଦୃଶ୍ୟ ଏହି ଅନ୍ତର୍ମୁଖୀନତା ସୂଚାଇ ଦିଏ ମାତ୍ର । ପ୍ରଶ୍ନଟିଏର ଉତ୍ତର ନିର୍ଣ୍ଣୟ କରିବା ଅପେକ୍ଷା ପ୍ରଶ୍ନଟିଏ ପଚାରିବା ଯେପରି ତାଙ୍କର ବହୁ କ୍ଷୁଦ୍ରଗଳ୍ପର ଶେଷ କଥା !

ପ୍ରବୀଣ ସମାଲୋଚକ ମୀନାକ୍ଷୀ ମୁଖାର୍ଜୀଙ୍କ ଭାଷାରେ – 'ପରିଚିତ ପୃଥିବୀରୁ ଅପରିଚିତ ପୃଥିବୀରେ ପହଞ୍ଚାଇ ଦେବା ଜଗନ୍ନାଥ ପ୍ରସାଦଙ୍କ ଗଳ୍ପର ବିଶେଷତ୍ୱ ।' ସମାଲୋଚକ ହିମାଂଶୁ ଶେଖର ମହାପାତ୍ରଙ୍କ ମନ୍ତବ୍ୟ ଏଠାରେ ପ୍ରଣିଧାନଯୋଗ୍ୟ । ସେ କହନ୍ତି, 'ପ୍ରଥମରୁ ହିଁ ମନେହୁଏ, ନାଟକୀୟତା ନୁହେଁ, ସଲିଲକି ବା ନିଜସ୍ୱ ସଂଳାପ ଜଗନ୍ନାଥ ପ୍ରସାଦଙ୍କ କ୍ଷୁଦ୍ରଗଳ୍ପଗୁଡ଼ିକର ମୂଳ ନିର୍ଯ୍ୟାସ ।'

(ଅପ୍ରକାଶିତ ଆଲୋଚନା)

ଜଗନ୍ନାଥ ପ୍ରସାଦଙ୍କ ଗଳ୍ପ ପରେ ଗଳ୍ପ ପାଠକଲେ ପାଠକ/ସମାଲୋଚକର ମନେ ହୋଇପାରେ, ସେ ଯେପରି ନିଜ ସହିତ ନିଜେ ଯୁକ୍ତିତର୍କ କରୁଛି ଓ ଅବଶେଷରେ ବୁଝି ପାରୁଛି – ଜୀବନର ରହସ୍ୟ କେବଳ ରହସ୍ୟ ହୋଇ ରହିଯାଏ !

---

# ବିଜିତ ନ ହେବାର ଦେଶ

**କେ**ତେକ ବର୍ଷ ତଳେ ଗୋଟିଏ ଓଡ଼ିଆ ଦୈନିକରେ ପ୍ରକାଶିତ ହୋଇଥିଲା– 'ଜେ.ପି. ଦାସ ନାମ ଧାରଣ କରିଥିବା ତିନିଜଣ ପ୍ରମୁଖ ବ୍ୟକ୍ତି ଅଛନ୍ତି ଓଡ଼ିଶାରେ । ସେମାନେ ହେଲେ – ଜେ.ପି. ଦାସ (ହୃଦ୍‌ଯନ୍ତ୍ର ବିଶେଷଜ୍ଞ), ଜେ.ପି. ଦାସ (ମନସ୍ତତ୍ତ୍ୱବିତ୍), ଜେ.ପି. ଦାସ (ଦେଶ କାଳ ପାତ୍ର) ।'




ଶେଷୋକ୍ତ ବ୍ୟକ୍ତି ହେଲେ ଏ ଗ୍ରନ୍ଥର ଆଲୋଚ୍ୟ ବ୍ୟକ୍ତିତ୍ୱ । ସମ୍ବାଦପତ୍ରର ସଂପାଦକ ହୁଏତ ଭାବିଥିବେ, 'ଦେଶ କାଳ ପାତ୍ର'ର ଲେଖକ ଭାବରେ ଜେ.ପି. ଦାସ ବା ଜଗନ୍ନାଥ ପ୍ରସାଦ ଅଧିକ ପରିଚିତ; 'ପୁରୀ ପେଣ୍ଟିଙ୍ଗସ୍' ବା 'ପ୍ରଥମ ପୁରୁଷ'ର ପ୍ରଣେତା ଭାବରେ ନୁହନ୍ତି ।

ନାମକୁ ନେଇ ଏପରି ସମସ୍ୟା ତ କେବେ କେବେ ହୋଇଥାଏ । ପ୍ରଖ୍ୟାତ ବଙ୍ଗୀୟ ଔପନ୍ୟାସିକ ଶରତଚନ୍ଦ୍ର ଚାଟାର୍ଜୀ ଜୀବିତ ଥିବା ସମୟରେ ଆଉ ଜଣେ

ଲେଖକ ବଙ୍ଗଳାରେ ଲେଖାଲେଖି କରୁଥିଲେ । ତାଙ୍କ ନାମ ମଧ୍ୟ ଥିଲା ଶରତଚନ୍ଦ୍ର ଚାଟାର୍ଜୀ । କେହି ଜଣେ ପଚାରିଲେ ପ୍ରଥମ ଶରତଚନ୍ଦ୍ରଙ୍କୁ, 'କେଉଁଟି ପ୍ରକୃତରେ ଆପଣଙ୍କ ଉପନ୍ୟାସ ଜାଣିବା କେମିତି ?' କହିଲେ ଶରତଚନ୍ଦ୍ର, 'ମୋ' ନାମ ନିକଟରେ ବ୍ରାକେଟ୍‌ରେ ଲେଖିଦିଅନ୍ତୁ 'ଚରିତ୍ରହୀନ' ।' ଶରତଚନ୍ଦ୍ରଙ୍କ ଗୋଟିଏ ପ୍ରସିଦ୍ଧ ଉପନ୍ୟାସର ନାମ 'ଚରିତ୍ରହୀନ' ।

୨୦୦୮ ଏପ୍ରିଲ୍ ପହିଲାରେ ଭୁବନେଶ୍ୱରର କୌଣସି ଅନୁଷ୍ଠାନରେ ପାଳିତ ହେଉଥାଏ ଉତ୍କଳ ଦିବସ । ମୁଖ୍ୟ ଅତିଥି ଥାଆନ୍ତି ଜଣେ ତରୁଣ ଏମ୍.ପି. । ମୁଁ ଥାଏ ମୁଖ୍ୟ ବକ୍ତା । ସଭା ଆରମ୍ଭ ହେବା ପୂର୍ବରୁ ଏମ୍.ପି. ମହୋଦୟ କାହାକୁ କହୁଥିବାର ଶୁଣିଲି, 'ଦେଶ କାଳ ପାତ୍ର' ବହିଟିଏ ମିଳନ୍ତା ନାହିଁ ?' କିଛି ସମୟ ପରେ କେହି ଜଣେ ବହିଟିଏ ଆଣି ତାଙ୍କୁ ଧରାଇ ଦେଲେ । ଏମ୍.ପି. ମହୋଦୟ ଆଗରୁ ସେ ବହିଟି ଦେଖିଥିଲେ ବୋଲି ମନେହେଲା ନାହିଁ । ହୁଏତ କେହି ତାଙ୍କୁ କହିଥିବେ – ଉତ୍କଳ ଦିବସରେ ଭାଷଣ ଦେବା ପାଇଁ ସେ ବହିଟି ସହାୟକ ହେବ ।

ଜଗନ୍ନାଥ ପ୍ରସାଦ ତାଙ୍କର ଦୀର୍ଘ ସୃଜନଶୀଳ ଅବଧି ମଧ୍ୟରେ ଗୋଟିଏ ମାତ୍ର ଉପନ୍ୟାସ ରଚନା କରିଛନ୍ତି – 'ଦେଶ କାଳ ପାତ୍ର' (୧୯୯୨) । ଏହି ଗୋଟିଏ ମାତ୍ର ଗ୍ରନ୍ଥ ତାଙ୍କୁ ଜଣେ ପ୍ରତିଷ୍ଠିତ ଔପନ୍ୟାସିକର ମର୍ଯ୍ୟାଦା ପ୍ରଦାନ କରିଛି – ବହୁ ଉପନ୍ୟାସ ରଚନା କରି ମଧ୍ୟ ଅନେକେ ସେଭଳି ମର୍ଯ୍ୟାଦା ଲାଭ କରି ନାହାନ୍ତି । ମାତ୍ର ଗୋଟିଏ ଗୋଟିଏ ଉପନ୍ୟାସ ରଚନା କରି ଅବଶ୍ୟ କେତେକ ଔପନ୍ୟାସିକ ଓଡ଼ିଆ ସାହିତ୍ୟରେ ସ୍ୱୀକୃତି ଲାଭ କରିଛନ୍ତି । ଯେପରି – ଗୋପାଳ ବଲ୍ଲଭ ଦାସ (ଭୀମା ଭୂୟାଁ), ବୈଷ୍ଣବ ଚରଣ ଦାସ (ମନେମନେ) ବା ଉପେନ୍ଦ୍ର କିଶୋର ଦାସ (ମଲାଜହ୍ନ) ।

'ଦେଶ କାଳ ପାତ୍ର' ସଂପର୍କରେ ପ୍ରଥମରୁ ଉଲ୍ଲିଖିତ ଦୁଇଟି ଘଟଣାରୁ ସ୍ପଷ୍ଟ ହୁଏ– ଏ ଉପନ୍ୟାସଟି ପାଠକ ମହଲରେ ବିଶେଷ ପରିଚିତ; ଐତିହାସିକ ତଥ୍ୟ ଦୃଷ୍ଟିରୁ ଏହା ମଧ୍ୟ ଗୁରୁତ୍ୱପୂର୍ଣ୍ଣ ।

ଗତାନୁଗତିକ ସମାଲୋଚନା ପଦ୍ଧତିରେ 'ଦେଶ କାଳ ପାତ୍ର'ର ବିଚାର ସହଜ ନୁହେଁ । ଏହାର ବିଷୟବସ୍ତୁ ଇତିହାସ-ଆଧାରିତ; ତେଣୁ ଏହା ଐତିହାସିକ ଉପନ୍ୟାସ ପର୍ଯ୍ୟାୟଭୁକ୍ତ । କୌଣସି ନିର୍ଦ୍ଦିଷ୍ଟ ଚରିତ୍ର ବା ଘଟଣା ଉପରେ ଏହା ଆଶ୍ରିତ ନୁହେଁ । ଏହାର ପଟ୍ଟଭୂମି ଊନବିଂଶ ଶତାବ୍ଦୀର ଦ୍ୱିତୀୟ ଭାଗର ରାଜନୀତିକ, ସାଂସ୍କୃତିକ, ସାମାଜିକ ଓଡ଼ିଶା । ଏହି ସମୟ ଓଡ଼ିଶା ଇତିହାସର ଏକ ସନ୍ଧିକାଳ– ପ୍ରାଚୀନ ଯୁଗର ଅବସାନ ତଥା ନୂତନ ଯୁଗର ଅଭ୍ୟୁଦୟର ସମୟ ।

ବହୁ ଚରିତ୍ର ଓ ଘଟଣାର ସମନ୍ୱୟ ବା କୋଲାଜ୍‌ରେ ସଂରଚିତ 'ଦେଶ କାଳ ପାତ୍ର' । ଏହି ଚରିତ୍ର ଓ ଘଟଣାମାନ ଆମର ପରିଚିତ, କିନ୍ତୁ ଅତୀତ ଗର୍ଭରୁ ଉଦ୍ଧାର କରି ଜଗନ୍ନାଥ ପ୍ରସାଦ ସେମାନଙ୍କଠାରେ ଜୀବନ୍ୟାସ କରିଛନ୍ତି । ତାଙ୍କର

କିଛି ସ୍ମୃତି
କିଛି ଅଭିବ୍ୟକ୍ତି

ବିଭୂତି ପଟ୍ଟନାୟକ

## ୧୯୯୨ର ଶ୍ରେଷ୍ଠ ଓଡ଼ିଆ ବହି: 'ଦେଶ କାଳ ପାତ୍ର'

ପ୍ରଗତିବାଦୀ ୩ ଜାନୁଆରୀ ୧୯୯୩

ଉଦ୍ଦେଶ୍ୟ—ସଂଶିତ ସମୟର ଚିତ୍ରଟିଏ ସୃଷ୍ଟି କରିବା ଏବଂ ଏଥିରେ ସେ ସଫଳତା ଲାଭ କରିଛନ୍ତି ।

'ଦେଶ କାଳ ପାତ୍ର'ର କେତେକ ଚରିତ୍ର ହେଲେ—ଫକୀର ମୋହନ ସେନାପତି, ରାଧାନାଥ ରାୟ, ଗୌରୀ ଶଙ୍କର ରାୟ, ପ୍ୟାରୀ ମୋହନ ଆଚାର୍ଯ୍ୟ, ସାମନ୍ତ ଚନ୍ଦ୍ରଶେଖର, ମଧୁସୂଦନ ଦାସ, ରାଜା ରାମଚନ୍ଦ୍ର ଦେବ, ରାଜା ସୁଢ଼ଳ ଦେବ, ଟି.ଇ. ରେଭେନ୍ସା, ଜନ୍ ବିମ୍ସ୍ — ସେ ସମୟର ଓଡ଼ିଶାର ବିଭିନ୍ନ କ୍ଷେତ୍ରରେ ନେତୃତ୍ୱ ପ୍ରଦାନ କରୁଥିବା ପ୍ରମୁଖ ବ୍ୟକ୍ତିଗଣ । ଗଜପତି ରାଜାଙ୍କ କ୍ଷମତାର ହ୍ରାସ, ନ'ଅଙ୍କ ଦୁର୍ଭିକ୍ଷ, ଓଡ଼ିଆ ଭାଷା ସୁରକ୍ଷା ଆନ୍ଦୋଳନ — ଏହିପରି କେତେକ ଘଟଣା ଉପନ୍ୟାସର ଉପଜୀବ୍ୟ । ଉପନ୍ୟାସର ଆରମ୍ଭ ୧୮୫୯, ଶେଷ ୧୯୦୭ରେ ।

'ଦେଶ କାଳ ପାତ୍ର' ପ୍ରକାଶିତ ହେବା ପରେ ଏହା ସଂପର୍କରେ ବେଶ୍ କିଛି ଆଲୋଚନା ପତ୍ରପତ୍ରିକାମାନଙ୍କରେ ପ୍ରକାଶିତ ହେଲା — ଏପରିକି ଏକ ବିତର୍କ ସୃଷ୍ଟି ହେଲା । ବିଗତ କେତେବର୍ଷ ମଧ୍ୟରେ ପ୍ରକାଶିତ କୌଣସି ଉପନ୍ୟାସକୁ କେନ୍ଦ୍ରକରି ବୋଧହୁଏ ଏପରି ବିତର୍କ ହୋଇ ନ ଥିଲା । ବିତର୍କର କାରଣ ଯାହା ହେଉନା କାହିଁକି, 'ଦେଶ କାଳ ପାତ୍ର'ର ପ୍ରକାଶନ ଯେ ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା, ଏହା ପାଠକ/ସମାଲୋଚକମାନେ ସ୍ୱୀକାର କରିଥିଲେ । ପ୍ରମୁଖ ଔପନ୍ୟାସିକ ବିଭୂତି ପଟ୍ଟନାୟକ ମନ୍ତବ୍ୟ ଦେଲେ, 'ଦେଶ କାଳ ପାତ୍ର ୧୯୯୨ର ଶ୍ରେଷ୍ଠ ଓଡ଼ିଆ ବହି' (ପ୍ରଗତିବାଦୀ, ୩ ଜାନୁୟାରୀ, ୧୯୯୩) । ସମାଲୋଚକ ଶ୍ରୀନିବାସ ମିଶ୍ରଙ୍କ ମତରେ, 'ଐତିହାସିକସୁଲଭ ସତ୍ୟନିଷ୍ଠା, ଶିଳ୍ପୀସୁଲଭ ପରିମିତି, ମାର୍ଜିତ ରୁଚି, ବିଷୟବିନ୍ୟାସର କଳା କୌଶଳ ଓ ଭାଷା ପ୍ରୟୋଗର ନୈପୁଣ୍ୟ ଯୋଗୁଁ 'ଦେଶ କାଳ ପାତ୍ର' ଓଡ଼ିଆ ସାହିତ୍ୟରେ ନୂତନ ପୁରୋଦୃଷ୍ଟି ଓ ରୂପଗନ୍ଧର ଏକ ସଫଳ ସାହିତ୍ୟ କର୍ମ' (ସମାଜ) । ପ୍ରଫେସର ଖଗେଶ୍ୱର ମହାପାତ୍ର ଏ ଗ୍ରନ୍ଥକୁ ଅବହିତ କଲେ, 'ସୁଖବୋଧ ଇତିହାସ' (ଝଙ୍କାର, ଡିସେମ୍ବର, ୧୯୯୨) । କଥାଶିଳ୍ପୀ ମନୋଜ ଦାସଙ୍କ ମତରେ, ଏହା ଏକ ବିରଳ ଫର୍ମ (ଏନ୍.ବି.ଟି. ନ୍ୟୁଜ୍ ଲେଟର୍, ଜୁଲାଇ, ୧୯୯୩) ।

ন্যাশনাল বুক ট্রাস্ট, ইণ্ডিয়া আয়োজিত
জাতীয় পুস্তক সপ্তাহ
উৎসবে

**সবার সঙ্গে আড্ডা**

পশ্চিমবঙ্গ বাংলা আকাদেমির প্রাঙ্গণে
বুধবার ২০ নভেম্বর, ২০০২
ঠিক সন্ধ্যা ৬টা থেকে রাত ৮টায়

সবার সঙ্গে আড্ডায় বসবেন বাংলার তিন সেরা আড্ডাবাজ

খ্যাতনামা ঔপন্যাসিক
বুদ্ধদেব গুহ

জনপ্রিয় রসিক লেখক-কবি
তারাপদ রায়

সুখ্যাত অভিনেতা ও নাট্যকার
মনোজ মিত্র

আড্ডায় এনবিটি প্রকাশিত বাংলা অনুবাদে আধুনিক ওড়িয়া সাহিত্যের দিগ্‌দর্শী উপন্যাস জগন্নাথ প্রসাদ দাসের 'দেশ কাল পাত্র' আনুষ্ঠানিক ভাবে উন্মোচিত হবে

আপনার সবান্ধব আমন্ত্রণ

সহযোগিতায় : পশ্চিমবঙ্গ বাংলা আকাদেমি

ন্যাশনাল বুক ট্রাস্ট, ইণ্ডিয়া
এ-৫ গ্রীন পার্ক, নয়াদিল্লি-১১০ ০১৬
পূর্বাঞ্চল শাখা : ৫-এ ভবানী দত্ত লেন, কলকাতা-৭০০ ০৭৩

ତେବେ ଏ ଗ୍ରନ୍ଥସମ୍ପର୍କରେ କେତେକ ସମାଲୋଚକ ଆପତ୍ତି ମଧ୍ୟ ଉଠାଇଲେ । ସେମାନଙ୍କ ବକ୍ତବ୍ୟ ଥିଲା :

କ) ଗ୍ରନ୍ଥଟିରେ ବହୁ ତଥ୍ୟର ଅବତାରଣା କରାଯାଇଥିଲେ ମଧ୍ୟ ସେଗୁଡ଼ିକର ଉତ୍ସ ଉଲ୍ଲେଖ କରାଯାଇ ନାହିଁ । ତେଣୁ, ଜଣେ ପାଠକ ତଥ୍ୟ ସଂପର୍କରେ ନିଶ୍ଚିତ ହେବ କିପରି ?

ଖ) ଫକୀର ମୋହନ ଓ ରାଧାନାଥଙ୍କ ଭଳି ମନୀଷୀମାନଙ୍କ ଚରିତ୍ର ଚିତ୍ରଣରେ ସେମାନଙ୍କ ଦୋଷଦୁର୍ବଳତା ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରାଯାଇଛି । ସେମାନଙ୍କ ପ୍ରତି ସାଧାରଣ ପାତ୍ରପାତ୍ରୀଙ୍କ ଭଳି ଭାଷା ପ୍ରୟୋଗ କରାଯାଇଛି । ଯେପରି—ରାଧାନାଥ ଗଲା, ଫକୀର ମୋହନ କହିଲା, ଇତ୍ୟାଦି ।



ପେଙ୍ଗୁଇନ୍ ପ୍ରକାଶିତ 'ଦେଶ କାଳ ପାତ୍ର' ର ଇଂରାଜୀ ଅନୁବାଦ, ୨୦୦୯

ଯେଉଁ ସମାଲୋଚକମାନେ 'ଦେଶ କାଳ ପାତ୍ର'ର ତଥ୍ୟ ଓ ଚରିତ୍ର ଚିତ୍ରଣ ସଂପର୍କରେ ଆପତ୍ତି ଉଠାଇଲେ, ବ୍ୟାପକ ଅର୍ଥରେ ସେମାନେ ଏକ ଐତିହାସିକ ଉପନ୍ୟାସର ଶୈଳୀ ଓ ଚରିତ୍ର ଚିତ୍ରଣ ପ୍ରସଙ୍ଗ ଉତ୍‌ଥାପନ କରୁଥିଲେ । ଏ ଆପତ୍ତିଗୁଡ଼ିକ ସଂପର୍କରେ ଜଗନ୍ନାଥ ପ୍ରସାଦଙ୍କ ସ୍ୱକୀୟ ମନ୍ତବ୍ୟ ପ୍ରଣିଧାନ କରନ୍ତୁ :

'କ) ବହିଟି 'ଏକାଡେମିକ୍' ନୁହେଁ ଏବଂ 'ସ୍କଲାର୍' ମାନଙ୍କ ପାଇଁ ଉଦ୍ଦିଷ୍ଟ ନୁହେଁ । ଏଥିପାଇଁ ଏଥିରେ ଫୁଟ୍‌ନୋଟ୍, ରେଫରେନ୍‌ସ୍, ଇଣ୍ଡେକ୍‌ସ୍ ବା ବିବ୍‌ଲିଓଗ୍ରାଫି ଦିଆଯାଇ ନାହିଁ ।

ଖ) ରାଧାନାଥ ଓ ଫକୀର ମୋହନ ଯାହା କହିବାକୁ କୁଣ୍ଠା କରି ନ ଥିଲେ, ଆମେ କାହିଁକି ଶହେ ବର୍ଷ ପରେ ତାହା ଲେଖିବା ବା ପଢ଼ିବା ପାଇଁ କୁଣ୍ଠିତ ହେବା ? (ଫକୀର ମୋହନଙ୍କ ଆତ୍ମଜୀବନୀରୁ ଏ ଅଂଶଗୁଡ଼ିକ ମୋହିନୀମୋହନ କାଟି ଦେଇଥିଲେ; ପରବର୍ତ୍ତୀ ସମୟରେ ଯେଉଁ ସଂପାଦକମାନେ ପୁଣି ଏ ଅଂଶକୁ ପ୍ରକାଶ କରୁଛନ୍ତି, ସେମାନେ ନିଶ୍ଚୟ ଭୁଲ୍ କରୁ ନାହାନ୍ତି ।)

ବିଶିଷ୍ଟ ଲୋକମାନଙ୍କ ବାଲ୍ୟ ଓ ଛାତ୍ର ଅବସ୍ଥା ପାଇଁ 'ଗଲା' 'କହିଲା' ପ୍ରୟୋଗ କରାଯାଇଛି ଏବଂ ସେମାନଙ୍କ ପରବର୍ତ୍ତୀ ଜୀବନରେ 'ଗଲେ' 'କହିଲେ' ବ୍ୟବହୃତ ହୋଇଛି ।'

ବିଶିଷ୍ଟ ବ୍ୟକ୍ତିମାନଙ୍କ ଚରିତ୍ର ଚିତ୍ରଣ କରିବାର କଳା ଓ କୌଶଳ କିପରି ହେବା ଉଚିତ ? ଏ ପ୍ରସଙ୍ଗରେ ଇଂରେଜ ଲେଖକ ଲିଟନ୍ ଷ୍ଟ୍ରାଚି ସ୍ମରଣକୁ ଆସନ୍ତି । ୧୯୧୮ରେ ପ୍ରକାଶିତ ତାଙ୍କର 'ଏମିନେଣ୍ଟ ଭିକ୍ଟୋରିଆନ୍ସ' ଗ୍ରନ୍ଥରେ ସେ ଭିକ୍ଟୋରିଆନ୍ ଯୁଗର କେତେଜଣ ପ୍ରମୁଖ ବ୍ୟକ୍ତିଙ୍କ ସଂକ୍ଷିପ୍ତ ଜୀବନୀ ରଚନା କରିଛନ୍ତି । ତାଙ୍କ ମତରେ, ମହାନ୍ ବ୍ୟକ୍ତିମାନେ ସେମାନଙ୍କ ଦୋଷଦୁର୍ବଳତା ସତ୍ତ୍ୱେ ମହାନ୍ ହେବାର ଯୋଗ୍ୟତା ରଖନ୍ତି । ଅବଶ୍ୟ, ଅନେକ ଜୀବନୀ ଲେଖକ ଷ୍ଟ୍ରାଚିଙ୍କ ସହିତ ଏକମତ ହୁଅନ୍ତି ନାହିଁ । ସେମାନେ ମହାନ୍ ବ୍ୟକ୍ତିଙ୍କ କେବଳ ମହତ୍ ଗୁଣଗୁଡ଼ିକ ହିଁ ପ୍ରକାଶ କରନ୍ତି । ମଧୁସୂଦନ ଦାସଙ୍କ ଜୀବନ ଚରିତର ଲେଖକ ସୁରେନ୍ଦ୍ର ମହାନ୍ତି 'ଶତାବ୍ଦୀର ସୂର୍ଯ୍ୟ' ଓ 'କୁଳବୃଦ୍ଧ'ରେ ଏହି ପନ୍ଥା ଅନୁସରଣ କରିଛନ୍ତି । ସୁରେନ୍ଦ୍ର ମହାନ୍ତି ଓ ଜଗନ୍ନାଥ ପ୍ରସାଦଙ୍କ ଦୃଷ୍ଟିକୋଣରେ ଆମେ କିଛିଟା ପାର୍ଥକ୍ୟ ଲକ୍ଷ୍ୟ କରୁ ।

'ଦେଶ କାଳ ପାତ୍ର' ସଂପର୍କରେ ମୂଲ୍ୟବାନ୍ ସମାଲୋଚନାଟିଏ ଲେଖିଛନ୍ତି ଯତୀନ୍ଦ୍ର କୁମାର ନାୟକ । ଇଂରାଜୀରେ ଲିଖିତ ନାୟକଙ୍କ ଅନୁବାଦର କିୟଦଂଶ : 'ଦେଶ କାଳ ପାତ୍ର'ର ଅନ୍ୟତମ ସଫଳତା ହେଉଛି, ଉପନିବେଶବାଦଦ୍ୱାରା ପରାଭୂତ ବ୍ୟକ୍ତିର ଅନୁଭୂତି ପ୍ରକାଶ କରିବା । ଏ ଗ୍ରନ୍ଥ ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ଓଡ଼ିଶାର ସାମାଜିକ ଓ ସାଂସ୍କୃତିକ ଇତିହାସ । ନିର୍ଦ୍ଦିଷ୍ଟ ଚରିତ୍ର ଓ ଘଟଣା ଉପରେ ଆଧାରିତ ହୋଇ ନ ଥିବାରୁ ଆପାତତଃ ଏହାର କଥାବସ୍ତୁର ନିର୍ଦ୍ଦିଷ୍ଟ କେନ୍ଦ୍ର ନାହିଁ । କିନ୍ତୁ ଏହାର କଥାବସ୍ତୁକୁ ସଂହତି ଓ ବିନ୍ୟାସ ପ୍ରଦାନ କରେ ଅବକ୍ଷୟ ଓ ପୁନରୁତ୍‌ଥାନ ପ୍ରତି ଲେଖକଙ୍କ ଦୃଷ୍ଟିଭଙ୍ଗୀ' (ଦ ବୁକ୍ ରିଭ୍ୟୁ, ଅକ୍ଟୋବର ୧୯୯୪) ।




ଊନବିଂଶ ଶତାବ୍ଦୀର ଦ୍ୱିତୀୟ ଭାଗର ପୃଷ୍ଠଭୂମିରେ ଲିଖିତ 'ଦେଶ କାଳ ପାତ୍ର'ରେ କିନ୍ତୁ ଓଡ଼ିଶାର ସାମଗ୍ରିକ ଇତିହାସର ପ୍ରବହମାନତା, ଉତ୍‌ଥାନ ଓ ପତନର ଆଭାସ ମିଳେ । ଗ୍ରନ୍ଥର ଆରମ୍ଭରେ ଲେଖକ ଯେଉଁ ତିନୋଟି ଉଦ୍ଧୃତି ପ୍ରଦାନ କରିଛନ୍ତି, ତାହା ହିଁ ଯେପରି ଓଡ଼ିଶା ଇତିହାସର ପରିଚୟ – ସେଥିରେ ଯେପରି ପ୍ରତିଫଳିତ ଓଡ଼ିଶାର ଇତିହାସ ପ୍ରତି ଲେଖକଙ୍କ ଦୃଷ୍ଟିଭଙ୍ଗୀ ! ଉଦ୍ଧୃତି ତିନୋଟି ହେଲା–

(କ)  ଏ ଦେଶ ବିଜିତ ହେବାର ନୁହେଁ; ମଣିଷର ଆକାଂକ୍ଷାର ଉର୍ଦ୍ଧ୍ୱରେ ଦେବତାମାନଙ୍କର ଏ ଦେଶ ।

(ଓଡ଼ିଶା ଆକ୍ରମଣ ସମୟରେ ଆକବରଙ୍କ ସେନାଧକ୍ଷ ଜୟସିଂହ)

(ଖ) ବିଦେଶୀୟ ଲୋକେ କହନ୍ତି ଓଡ଼ିଆମାନଙ୍କର ଜ୍ଞାନ ଏପରି ସ୍ଥୂଳ ଯେ ନାନାପ୍ରକାର ଚେଷ୍ଟା କଲେ ମଧ୍ୟ ସେମାନେ କୌଣସି ପ୍ରକାରରେ କୌଣସି ବିଷୟରେ ସୁଶିକ୍ଷିତ ହୋଇପାରନ୍ତି ନାହିଁ । ମାତ୍ର ଅନୁଧାବନପୂର୍ବକ ବିବେଚନା କରି ଦେଖିଲେ ସେମାନଙ୍କର ଏହି ସଂସ୍କାର ଏକାନ୍ତ ଅଦୂରଦର୍ଶିତାମୂଳକ ।

(ଉତ୍କଳ ଦୀପିକା, ୧ ସେପ୍ଟେମ୍ବର ୧୮୬୬)

(ଗ)  ପାହିଲାଣି ଘୋର ତାମସୀ ଯାମିନୀ

(ରାଧାନାଥ ରାୟ, ୧୮୯୨)

'ଦେଶ କାଳ ପାତ୍ର' ଏହି ବିଜିତ ନ ହେବା ଦେଶର କାହାଣୀ । ଏ କାହାଣୀ ବିସ୍ମୃତ ହେବାର ନୁହେଁ ।




---

# ଇଂରାଜୀ ସାହିତ୍ୟରେ ଜଗନ୍ନାଥ ପ୍ରସାଦ

ଜଗନ୍ନାଥ ପ୍ରସାଦଙ୍କର ପ୍ରାୟ ସମସ୍ତ କବିତା ଓ ନାଟକ, ବହୁ ଗଳ୍ପ ଇଂରାଜୀରେ ଅନୂଦିତ ହୋଇଛି । ପଟଚିତ୍ର ତଥା ତାଳପତ୍ର ପୋଥିସଂପର୍କୀୟ ତାଙ୍କର ଗ୍ରନ୍ଥ ଇଂରାଜୀରେ ହିଁ ଲିଖିତ । ଦୁଇଟି ଓଡ଼ିଆ କବିତା ସଂକଳନ ଏବଂ ଗୋଟିଏ ଉର୍ଦ୍ଦୁ କବିତା ସଂକଳନ ସେ ଇଂରାଜୀରେ ଅନୁବାଦ କରିଛନ୍ତି । ଅନ୍ୟ ଭାବରେ କହିଲେ, ଜଗନ୍ନାଥ ପ୍ରସାଦଙ୍କର ପ୍ରାୟ ସମସ୍ତ ସାହିତ୍ୟକୃତି ଇଂରାଜୀ ପାଠକ ପାଇଁ ଉପଲବ୍ଧ । କହିବା ଅନାବଶ୍ୟକ, ମୁଖ୍ୟତଃ ଇଂରାଜୀ ଅନୁବାଦ ମାଧ୍ୟମରେ ଜଗନ୍ନାଥ ପ୍ରସାଦ ସର୍ବଭାରତୀୟ ସ୍ତରରେ ମାନ୍ୟତା ଓ ସ୍ୱୀକୃତି ଲାଭ କରିଛନ୍ତି । ହିନ୍ଦୀ ଓ ଅନ୍ୟାନ୍ୟ ଭାରତୀୟ ଭାଷାରେ ମଧ୍ୟ ତାଙ୍କର କେତେକ ସାହିତ୍ୟ କୃତି ଉପଲବ୍ଧ । ଏଠାରେ କିନ୍ତୁ ତାଙ୍କ କୃତିର ଇଂରାଜୀ ଅନୁବାଦ ସଂପର୍କରେ ହିଁ ଆଲୋଚନା କରାଯାଉଛି ।

ବିଗତ ଛଅ ଦଶକ ମଧ୍ୟରେ ଓଡ଼ିଆ ସାହିତ୍ୟକୁ ଇଂରାଜୀରେ ଅନୁବାଦ କରିବା ପାଇଁ ଉଲ୍ଲେଖଯୋଗ୍ୟ ଉଦ୍ୟମ ଜାରି ରହିଛି । ଉତ୍କଳ, ସମ୍ବଲପୁର ବିଶ୍ୱବିଦ୍ୟାଳୟ, ରେଭେନ୍ସା କଲେଜ (ବିଶ୍ୱବିଦ୍ୟାଳୟ) ଅନୁବାଦକୁ ଏମ୍.ଏ.(ଇଂରାଜୀ) ପାଠ୍ୟକ୍ରମରେ ଅନ୍ତର୍ଭୁକ୍ତ କରି ଶୈକ୍ଷିକ ମର୍ଯ୍ୟାଦା ପ୍ରଦାନ କରିଛନ୍ତି । ସାହିତ୍ୟ ଏକାଡେମୀ, ନ୍ୟାସ୍‌ନାଲ୍ ବୁକ୍ ଟ୍ରଷ୍ଟ, ଭାରତ ସରକାରଙ୍କ ସଂସ୍କୃତି ବିଭାଗ ତଥା ଅକ୍‌ସ୍‌ଫୋର୍ଡ୍, ୟୁନିଭର୍ସିଟି ପ୍ରେସ୍, ଓରିଏଣ୍ଟ ଲଙ୍ଗମ୍ୟାନ୍, ମ୍ୟାକ୍‌ମିଲାନ୍, ପେଙ୍ଗୁଇନ୍ ଭଳି ପ୍ରତିଷ୍ଠିତ ପ୍ରକାଶନ ସଂସ୍ଥା ଓଡ଼ିଆ ସାହିତ୍ୟର ଇଂରାଜୀ ଅନୁବାଦ ପ୍ରକାଶରେ ବିଶେଷ ଭୂମିକା ଗ୍ରହଣ କରିଛନ୍ତି । ଫେବର୍ ଏଣ୍ଡ ଫେବର୍, ୟୁନିଭର୍ସିଟି ଅଫ୍ କାଲିଫର୍ଣ୍ଣିୟା ପ୍ରେସ୍, ୟୁନିଭର୍ସିଟି ଅଫ୍ ମିଚିଗାନ୍ ଭଳି ବିଦେଶୀ ପ୍ରକାଶନ ସଂସ୍ଥା ମଧ୍ୟ କେତେକ ମୂଲ୍ୟବାନ୍ ଓଡ଼ିଆ ସାହିତ୍ୟକୃତିର ଅନୁବାଦ ପ୍ରକାଶ କରିଛନ୍ତି । ଭୁବନେଶ୍ୱରର ସତୀର୍ଥ, ରୂପାନ୍ତର ଏବଂ ଗ୍ରାସ୍‌ରୁଟ୍‌ସ୍ ଭଳି ଅନୁଷ୍ଠାନ ଅନୁବାଦ କ୍ଷେତ୍ରରେ ବିଶେଷ ଉଦ୍ୟମ କରିଛନ୍ତି । ତେବେ, ବହୁ ସମୟରେ କବି ଓ ଲେଖକମାନେ ବ୍ୟକ୍ତିଗତ ଉଦ୍ୟମରେ ନିଜ ନିଜର ସାହିତ୍ୟକୃତିର ଅନୁବାଦ ଅପେକ୍ଷାକୃତ କ୍ଷୁଦ୍ର/ଆଞ୍ଚଳିକ ପ୍ରକାଶକଙ୍କ ଦ୍ୱାରା ପ୍ରକାଶିତ କରାଇବା ଲକ୍ଷ୍ୟ କରାଯାଉଛି । ଏଯାଏଁ ପ୍ରାୟ ଦୁଇଶତ ଓଡ଼ିଆ ଗ୍ରନ୍ଥ ଇଂରାଜୀରେ ପ୍ରକାଶିତ ହୋଇସାରିଛି ବୋଲି ମନେ ହୁଏ । କିନ୍ତୁ ଏଥିମଧ୍ୟରୁ ଅଧିକାଂଶ ଗ୍ରନ୍ଥର ଅନୁବାଦ ଆଶାନୁରୂପ ନୁହେଁ । ବ୍ୟକ୍ତିଗତ ଉଦ୍ୟମରେ ପ୍ରକାଶିତ ଗ୍ରନ୍ଥଗୁଡ଼ିକର ପ୍ରସାର ମଧ୍ୟ ସୀମିତ ।

ଜଗନ୍ନାଥ ପ୍ରସାଦଙ୍କ ଗ୍ରନ୍ଥଗୁଡ଼ିକର ଅନୁବାଦ ପ୍ରାୟତଃ ସଫଳ, ଏଥିରେ ବୋଧହୁଏ ଦ୍ୱିମତ ହେବାର ନାହିଁ । ଏହାର କାରଣ ସ୍ୱରୂପ କୁହାଯାଇପାରେ– (୧) ଜଗନ୍ନାଥ ପ୍ରସାଦଙ୍କର ଇଂରାଜୀରେ ଯଥେଷ୍ଟ ଦକ୍ଷତା ଅଛି ଏବଂ ସେ ନିଜେ ତାଙ୍କର ବହୁ ରଚନାର ଅନୁବାଦ କରିଛନ୍ତି/ ସମର୍ଥ ଅନୁବାଦକମାନଙ୍କ ସହାୟତା ଗ୍ରହଣ କରିଛନ୍ତି । (୨) ଜଗନ୍ନାଥ ପ୍ରସାଦଙ୍କ ରଚନାର ବିଷୟବସ୍ତୁ, ଚିତ୍ରକଳ୍ପ, ଦୃଷ୍ଟିଭଙ୍ଗୀ ଏପରି ଯେ, ଇଂରାଜୀ ଅନୁବାଦରେ ଏହାର ମୂଳ ସୌନ୍ଦର୍ଯ୍ୟ ପ୍ରାୟ ସୁରକ୍ଷିତ ରହେ । ଏ ପ୍ରସଙ୍ଗରେ ଗ୍ରୀକ୍ କବି ଓ ସମାଲୋଚକ ଭ୍ୟାସିଲିସ୍ ଭିଟାସ୍ୟାକ୍ସିସ୍‌ଙ୍କ ମତ ଉଦ୍ଧାର କରାଯାଇପାରେ – 'ଜଗନ୍ନାଥ ପ୍ରସାଦଙ୍କ ରଚନା ସାର୍ବଜନୀନ.... ସଫଳ କଳାର ତ ଏହା ହିଁ ଧର୍ମ' (ଜେ.ପି.ଦାସ : ପୋଏମ୍‌ସ୍, ଗ୍ରାସ୍‌ରୁଟ୍‌ସ୍, ୨୦୦୪) ।



*ARNOLD-HEINEMANN PUBLISHERS*
*(INDIA) PRIVATE LIMITED*
AB/9 Safdarjang Enclave, New Delhi-110016
Phone No. 667886

**TIMESCAPES**
A Collection of Poems
By JAGANNATH PRASAD DAS
1980 pp 56 Rs. 25

...his new collection of poems brings fresh and strong evidence of his unquestionable talent. Being a genuine poet, Das voices the agonies, the dreams, the hopes and the frustrations of the human being. His poetry is universal as true poetry should be and ranks with some of the best in any language.

—*Vassilis Vitsaxis*

ଏଠାରେ ସାମାନ୍ୟ ସ୍ପଷ୍ଟୀକରଣର ଆବଶ୍ୟକତା ରହୁଛି । ଯାହା ଆଞ୍ଚଳିକ ତାହା ମଧ୍ୟ ସାର୍ବଜନୀନ ହୋଇପାରେ । କିନ୍ତୁ ଅନୁବାଦରେ ଆଞ୍ଚଳିକ କୃତିର ତର୍ଜମା/ସଂପାଦନା କେତେକାଂଶରେ ଜରୁରୀ ହୋଇପଡ଼େ । ଜଗନ୍ନାଥ ପ୍ରସାଦଙ୍କ କବିତା/ଗଳ୍ପ ଅନୁବାଦ କ୍ଷେତ୍ରରେ ସେଭଳି ତର୍ଜମା/ସଂପାଦନାର ଆବଶ୍ୟକତା କମ୍ ମନେ ହୁଏ ।

ଉଦାହରଣସ୍ୱରୂପ, 'କଳାହାଣ୍ଡି' କବିତାଟି ବିଚାରକୁ ନିଅନ୍ତୁ (କବିତାଟି 'କଳାହାଣ୍ଡି' ପରିଚ୍ଛେଦରେ ଉଦ୍ଧୃତ) ।

ଏ କବିତାରେ କଳାହାଣ୍ଡି ଗୋଟିଏ ମେଟାଫର୍ ବା ପ୍ରତୀକ – କ୍ଷୁଧା ଓ ଅସହାୟତାର । ସୋମାଲିଆ ବା ଇଥିଓପିଆର ଜଣେ ପାଠକ କଳାହାଣ୍ଡିରେ ତା' ନିଜ ଦେଶର ଚିତ୍ର ଲକ୍ଷ୍ୟ କରିପାରିବ । କଳାହାଣ୍ଡି ସ୍ଥାନଟି ସହିତ ଅପରିଚିତ ଜଣେ ଅଣଓଡ଼ିଆ ବା ଅଣଭାରତୀୟ ପାଠକ ପାଇଁ 'କଳାହାଣ୍ଡି' କବିତାର ଆବେଦନ ହ୍ରାସ ହେବାର କାରଣ ନାହିଁ ।

ଜଗନ୍ନାଥ ପ୍ରସାଦ ତାଙ୍କର ବହୁ କବିତା ଓ ପ୍ରାୟ ସମସ୍ତ ନାଟକର ଅନୁବାଦ ନିଜେ ହିଁ କରିଛନ୍ତି । ତେବେ ତାଙ୍କ କବିତାର ଅନ୍ୟାନ୍ୟ ଅନୁବାଦକମାନେ ହେଲେ, ଦେବ ପଟ୍ଟନାୟକ (ଅବସରପ୍ରାପ୍ତ ଇଂରାଜୀ ପ୍ରଫେସର), ହୃଷିକେଶ ପଣ୍ଡା (କଥାଶିଳ୍ପୀ ଓ ପ୍ରଶାସକ), ଦୁର୍ଗା ପ୍ରସାଦ ପଣ୍ଡା (ଇଂରାଜୀ ଓ ଓଡ଼ିଆ କବି) ଏବଂ ପଲ୍ ସେଣ୍ଟ ପିୟର୍ (କାନାଡାର ମଣ୍ଟ୍ରିୟଲ୍ ବିଶ୍ୱବିଦ୍ୟାଳୟର ଅନୁବାଦ ବିଭାଗର



ARNOLD-HEINEMANN PUBLISHERS
(INDIA) PRIVATE LIMITED
AB/9 Safdarjang Enclave, New Delhi-110016

**FIRST PERSON**
A Collection of Poems
*By JAGANNATH PRASAD DAS*
(Translated from the original Oriya)
*1976 216×138 mm 56 pp Rs. 15*

"Come to my dreams, sings Jagannath Prasad Das, the young Oriya poet. And he reveals himself to himself, and others from the under-layers of a poignant sensibility in delicate nuances of feelings. The feelings are, however, not all imperceptible, but cognisable reveries fantasies and dreams of a lyrical 'first person' in intense 'being-in-situations'. This is authentic poetic expression in new metaphors."

—*Dr. Mulk Raj Anand*

ଅବସରପ୍ରାପ୍ତ ପ୍ରଫେସର) । ସେହିପରି ତାଙ୍କ କ୍ଷୁଦ୍ରଗଳ୍ପଗୁଡ଼ିକର ଅନୁବାଦକ ସେ ନିଜେ, ବିକ୍ରମ କେଶରୀ ଦାସ (ଇଂରାଜୀ ପ୍ରଫେସର ତଥା ଗୋପୀନାଥ ମହାନ୍ତିଙ୍କ 'ପରଜା' ଓ 'ଲୟ ବିଲୟର' ଅନୁବାଦକ), ରବି ସ୍ୱାଇଁ (ଭାରତୀୟ ଇଂରାଜୀ କବି), ଲୀଳାବତୀ ଓ କମଳାକାନ୍ତ ମହାପାତ୍ର (ଲକ୍ଷ୍ମୀକାନ୍ତଙ୍କ 'କଣାମାମୁଁ' ଓ ଫକୀର ମୋହନଙ୍କ ବହୁ କ୍ଷୁଦ୍ରଗଳ୍ପର ଅନୁବାଦକ), ଅଶୋକ ମହାନ୍ତି (ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ପ୍ରଫେସର) ଓ ପଲ୍ ସେଣ୍ଟ ପିୟର୍ । ନିକଟରେ ପେଙ୍ଗୁଇନ୍ ପ୍ରକାଶ କରିଛନ୍ତି ଯତୀନ୍ଦ୍ର କୁମାର ନାୟକଙ୍କଦ୍ୱାରା ଅନୂଦିତ 'ଦେଶ କାଳ ପାତ୍ର' ।

ଜଗନ୍ନାଥ ପ୍ରସାଦ ଆପାତତଃ ବିଶ୍ୱାସ କରନ୍ତି – ଏକାଧିକ ଅନୁବାଦକଙ୍କ ମିଳିତ ଉଦ୍ୟମ ଅନୁବାଦକୁ ଅଧିକ ସଫଳ ଓ ଗ୍ରହଣଯୋଗ୍ୟ କରାଏ । ରବି ସ୍ୱାଇଁଙ୍କ ମୂଳ ଓଡ଼ିଆର ଅନୁବାଦ ପଲ୍ ସେଣ୍ଟ ପିୟର୍‌ଙ୍କ ଦ୍ୱାରା ସଂପାଦିତ ହେବା ପରେ ଏହା ଅଧିକ ସାବଲୀଳ ଓ ପଠନୀୟ ହୋଇପାରିଛି ନିଶ୍ଚୟ ।

ଜଗନ୍ନାଥ ପ୍ରସାଦ ନିଜେ ଦୁଇଟି ଓଡ଼ିଆ କବିତା ସଂକଳନର ଅନୁବାଦ କରିଛନ୍ତି । ପ୍ରଥମଟି ଆମେରିକୀୟ କବି କ୍ୟାଥେରିନ୍ କ୍ଳେମେଣ୍ଟଙ୍କ ସହିତ 'ଗ୍ରୋଇଂ ଅଣ୍ଡର୍ ଦ ଇଣ୍ଡିଆନ୍ ସ୍କାଏ' (୧୯୯୧), ଦ୍ୱିତୀୟଟି ଆର୍ଲିନ୍ ଜାଇଡ୍‌ଙ୍କ ସହିତ 'ଅଣ୍ଡର୍ ଏ ସାଇଲେଣ୍ଟ ସନ୍' (୧୯୯୨) । ପ୍ରସିଦ୍ଧ ଉର୍ଦ୍ଦୁ କବି ଗୁଲ୍‌ଜାର୍‌ଙ୍କ କେତେକ କବିତାର ସେ ଅନୁବାଦ କରିଛନ୍ତି–'ଅଟମ୍ ମୁନ୍' (୧୯୯୯) । ତାଙ୍କ ସଂପାଦିତ ଓଡ଼ିଆ ଗଳ୍ପର ଇଂରାଜୀ ଅନୁବାଦ 'ଓଡ଼ିଆ ସର୍ଟ୍ ଷ୍ଟୋରିଜ୍', 'କବିତା – ୯୩' (କେ. ସଚ୍ଚିଦାନନ୍ଦନଙ୍କ ସହିତ) ଯଥାକ୍ରମେ ୧୯୮୩ ଓ ୧୯୯୩ରେ ପ୍ରକାଶିତ । ଏହି ଗ୍ରନ୍ଥଗୁଡ଼ିକ ମଧ୍ୟରେ ତାଙ୍କ ଅନୂଦିତ ଗୁଲ୍‌ଜାର୍‌ଙ୍କ କବିତା ସଂକଳନ ବିଶେଷଭାବରେ ଆଦୃତ ।

ଆର୍ଲିନ ଜାଇଡ୍ ଓ ଗଗନ ଗିଲଙ୍କ ସହିତ ୧୯୯୦



ଦିଲ୍ଲୀରୁ ପ୍ରକାଶିତ 'ମାନୁଷୀ' ପତ୍ରିକାରେ ପଞ୍ଚଦଶ–ଷୋଡ଼ଶ ଶତାବ୍ଦୀର କବି ବଳରାମ ଦାସଙ୍କ 'ଲକ୍ଷ୍ମୀ ପୁରାଣ'ର ଇଂରାଜୀ ଅନୁବାଦ ମଧ୍ୟ ସେ ପ୍ରକାଶ କରିଛନ୍ତି ।

ଅନୁବାଦକ ଓ ଅନୁବାଦର ସହାୟକଭାବରେ ଜଗନ୍ନାଥ ପ୍ରସାଦଙ୍କ ନିଷ୍ଠା, ଆନ୍ତରିକତା ଓ ଅଧ୍ୟବସାୟ ସଂପର୍କରେ ପଲ୍ ସେଣ୍ଟ୍ ପିୟର୍‌ଙ୍କ ମନ୍ତବ୍ୟ ଉଦ୍ଧାରଯୋଗ୍ୟ :

'ଜଗନ୍ନାଥ ପ୍ରସାଦଙ୍କ ଏକ ଗଳ୍ପ ସଂକଳନ 'ଡିଅର୍ ଜେଷ୍ଟର୍' ରବି ସ୍ୱାଇଁଙ୍କ ସହିତ ଏବଂ ଦୁଇଟି କବିତା ସଂକଳନ 'ଲଭ୍‌ଲାଇନ୍‌ସ୍' ଏବଂ 'ଡାର୍କ ଟାଇମ୍‌ସ୍' ସ୍ୱୟଂ କବିଙ୍କ ସହିତ ଅନୁବାଦ କରିବାରେ ମୁଁ ସହାୟତା କରିଥିଲି । ଏହି ଅବସରରେ ତାଙ୍କର କାର୍ଯ୍ୟ କରିବାର ଶୈଳୀ ଲକ୍ଷ୍ୟ କରିଥିଲି । ଯାହା କିଛି ଜାଣିବାକୁ ଚାହିଁଲେ ସେ ତୁରନ୍ତ ବୁଝାଇ ଦେଉଥିଲେ ବା ମୂଳଲେଖା ସହିତ ଅନୁବାଦକୁ ମିଳାଇ କେବେ କେବେ ପରିବର୍ତ୍ତନ କରୁଥିଲେ । ଯେ କୌଣସି ଅନୂଦିତ ପାଠକୁ ସେ ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ କରୁଥିଲେ । ଗୋଟିଏ ପାଠକୁ କିପରି ଭିନ୍ନ ଭିନ୍ନ ଭାବରେ ଅନୁବାଦ କରାଯାଇପାରେ, ତାହା ସେ ଆଲୋଚନା କରୁଥିଲେ । ଜଗନ୍ନାଥ ପ୍ରସାଦଙ୍କ କବିତାର ଇଂରାଜୀ ଅନୁବାଦର ପରିମାଣ ପର୍ଯ୍ୟାପ୍ତ । ସେଥିପାଇଁ ପ୍ରଫେସର୍ ଏନ୍. ଦ୍ୱିବେଦୀ ତାଙ୍କ ସଂପାଦିତ 'ଇଣ୍ଡିଆନ୍ ପୋଏଟ୍‌ସ୍ ଇନ୍ ଇଂଲିଶ୍' (ହାଇନେମ୍ୟାନ୍) ଗ୍ରନ୍ଥରେ ଜଗନ୍ନାଥ ପ୍ରସାଦଙ୍କୁ ଜଣେ ଭାରତୀୟ ଇଂରାଜୀ କବି ଭାବରେ ଗ୍ରହଣ କରିଛନ୍ତି ।'




ଜଗନ୍ନାଥ ପ୍ରସାଦଙ୍କ ସାମଗ୍ରିକ କୃତି ଆକଳନରେ ଅନୁବାଦକଭାବରେ ତାଙ୍କର ସଫଳତା ପ୍ରତି ଏଯାବତ୍ ସମାଲୋଚକମାନେ ଯଥେଷ୍ଟ ଗୁରୁତ୍ୱ ପ୍ରଦାନ କରିଥିବା ଭଳି ମନେ ହୁଏ ନାହିଁ ।

---

# ଦିଲ୍ଲୀ ଦୂର ନୁହେଁ

୩୦୫ ହାଉଜ୍ ଖାସ୍ ଆପାର୍ଟମେଣ୍ଟସ, ନୂଆଦିଲ୍ଲୀ ୧୧୦୦୧୬ – ଓଡ଼ିଶାର ବହୁ କବି, ଲେଖକ, ଶିଳ୍ପୀ ଦିଲ୍ଲୀର ଏ ଠିକଣା ସହିତ ପରିଚିତ । ଅନେକେ ଏହି ଠିକଣାରେ କେବେ ନା କେବେ ଚିଠି ଲେଖିଥିବେ; ଏହି ଠିକଣାରୁ ଚିଠି ପାଇଥିବେ । ୧୯୮୪ରେ ଆଇ.ଏ.ଏସ୍. ବୃତ୍ତିରୁ ଅବ୍ୟାହତି ନେବା ପରେ ଏହା ହିଁ ଜଗନ୍ନାଥ ପ୍ରସାଦଙ୍କ ଦିଲ୍ଲୀ ଠିକଣା । ପ୍ରାୟ ପଚିଶି ବର୍ଷ ହେଲା ସେ ଦକ୍ଷିଣ ଦିଲ୍ଲୀର ଏହି ଛୋଟ ଫ୍ଲାଟ୍‌ରେ ରହି ଆସିଛନ୍ତି । ଶୈଶବରେ ବାଣପୁରରେ ସେ ଯେଉଁ ବାସଗୃହରେ ରହୁଥିଲେ, ତାହା ଅବଶ୍ୟ ମୁଁ ଦେଖି ନାହିଁ । କିନ୍ତୁ ଷାଠିଏ ବର୍ଷ ତଳର ବାଣପୁରର ଗ୍ରାମ୍ୟ ପରିବେଶରେ ନିର୍ମିତ ବାସଗୃହ ଓ ମହାନଗରୀ ଦିଲ୍ଲୀର ହାଉଜ୍ ଖାସ୍ ଫ୍ଲାଟ ମଧ୍ୟରେ ଯେ କିଛି ସାମଞ୍ଜସ୍ୟ ଅଛି, ଏଭଳି ଅନୁମାନ କରାଯାଇପାରେ ।

ଘଟଣାକ୍ରମେ ମୁଁ ବେଶ୍ କେତେଥର ଯାଇଛି ଜଗନ୍ନାଥ ପ୍ରସାଦଙ୍କ ହାଉଜ୍ ଖାସ୍ ବାସଭବନକୁ । ମୋର ଦ୍ୱିତୀୟ ପୁତ୍ର ସିଦ୍ଧାର୍ଥ ଦିଲ୍ଲୀରେ 'ଟାଇମସ୍ ଅଫ୍ ଇଣ୍ଡିଆ'ରେ କାର୍ଯ୍ୟ କରୁଥିବା ସମୟରେ କିମ୍ବା ସରକାରୀ ବେସରକାରୀ କାର୍ଯ୍ୟରେ ମୋତେ ୨୦୦୨-୦୭ ମଧ୍ୟରେ ବାରମ୍ବାର ଦିଲ୍ଲୀ ଯିବାକୁ ପଡୁଥିଲା । ସେହି ଅବସରରେ ଜଗନ୍ନାଥ ପ୍ରସାଦଙ୍କୁ ଭେଟୁଥିଲି ତାଙ୍କ ବାସଗୃହରେ ।

ଲକ୍ଷ୍ୟ କରିଥିଲି, ଜଗନ୍ନାଥ ପ୍ରସାଦଙ୍କ ବ୍ୟକ୍ତିତ୍ୱ, ସାହିତ୍ୟ କୃତି ଓ ତାଙ୍କ ବାସଗୃହ ମଧ୍ୟରେ ଯେପରି ନିହିତ ଅନ୍ତରଙ୍ଗ ସଂପର୍କଟିଏ । ତାଙ୍କ ବ୍ୟକ୍ତିତ୍ୱର ସ୍ପଷ୍ଟତା, ପରିଚ୍ଛନ୍ନତା ବା ସାହିତ୍ୟକୃତିର ସାବଲୀଳତା, ସ୍ୱଚ୍ଛତା ମଧ୍ୟ ପ୍ରତିଫଳିତ ତାଙ୍କ ବାସଗୃହରେ । ବାସଗୃହଟିରେ ଖୁବ୍ କମ୍ ଆସବାବ, କାନ୍ଥରେ ଅଳ୍ପ କେତୋଟି ପେଣ୍ଟିଂ, କେଉଁଠି ଗୁଡ଼ାଏ ବହି ଗଦା ହୋଇ ନାହିଁ ଯେ ମନେ ହେବ ଜଗନ୍ନାଥ ପ୍ରସାଦ ଅଧ୍ୟୟନ/ଅଧ୍ୟାପନା, ସାହିତ୍ୟ ସାଧନାର ଜଞ୍ଜାଳରେ ଛନ୍ଦିହୋଇ ପଡ଼ିଛନ୍ତି । ଅଧ୍ୟୟନ/ଅଧ୍ୟାପନା ପାଇଁ ସେ ଅନେକାଂଶରେ ନିର୍ଭର କରନ୍ତି କେନ୍ଦ୍ର ସାହିତ୍ୟ ଏକାଡେମୀ, ଇଣ୍ଡିଆ ଇଣ୍ଟର୍‌ନ୍ୟାସ୍‌ନାଲ୍ ସେଣ୍ଟର୍‌ର ପାଠାଗାର ବା କୌଣସି ଅଭିଲେଖାଗାର ଉପରେ । ହୁଏତ ତଥ୍ୟ ସଂଗ୍ରହ କରନ୍ତି ଇଣ୍ଟରନେଟ୍ ମାଧ୍ୟମରେ । ହଠାତ୍ କାମରେ ନ ଆସୁଥିବା ବହି ଓ

ମନୋଜ ଦାସଙ୍କ ସରସ୍ୱତୀ ସମ୍ମାନ ପ୍ରାପ୍ତି ସଭାରେ ଓଡ଼ିଆ ଲେଖକମାନଙ୍କ ସହ, ଦିଲ୍ଲୀ ୨୦୦୧



ପତ୍ରପତ୍ରିକା ଦାନ କରିଦିଅନ୍ତି ବନ୍ଧୁ ବା ଗବେଷକମାନଙ୍କୁ । ଅଥଚ ଯେ କୌଣସି ବିଷୟରେ – ସାହିତ୍ୟ ହେଉ ବା ହେଉ ସମାଜତତ୍ତ୍ୱ, ନୃତତ୍ତ୍ୱ, କଳା – ତାଙ୍କୁ ଟେଲିଫୋନ୍ କଲେ ବା ପତ୍ରଟିଏ ଲେଖିଲେ ସେ ତା'ର ଉତ୍ତର ଦିଅନ୍ତି – ନ ଦେଇ ପାରିଲେ କେଉଁଠି ଅନୁସନ୍ଧାନ କରିବାକୁ ହେବ, ବତାଇ ଦିଅନ୍ତି । ତାଙ୍କ ଭଳି ବିଜ୍ଞ, ଶୃଙ୍ଖଳିତ – ଅଥଚ ମୁକ୍ତ ବ୍ୟକ୍ତି ମୁଁ ଖୁବ୍ କମ୍ ଦେଖିଛି ।

ଦିଲ୍ଲୀରେ ସ୍ଥାୟୀ ଭାବରେ ବସବାସ କରୁଥିବା ଅଲ୍ ଇଣ୍ଡିଆ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ମେଡିକାଲ୍ ସାଇନ୍ସସ୍‌ର ଅବସରପ୍ରାପ୍ତ ଜନସଂପର୍କ ଅଧିକାରୀ ବିଜୟ କୁମାର ଦାଶ ଥରେ ମୋତେ କହୁଥିଲେ, ଦିଲ୍ଲୀ ବା ତା'ର ପାର୍ଶ୍ୱବର୍ତ୍ତୀ ଅଞ୍ଚଳରେ ରହୁଥିବା ଓଡ଼ିଆଙ୍କ ସଂଖ୍ୟା ପ୍ରାୟ ଛଅ ଲକ୍ଷ । ଏହା ଅବଶ୍ୟ ଏକ ଆନୁମାନିକ ହିସାବ । ତେବେ, ଏତେସଂଖ୍ୟକ ଓଡ଼ିଆ ବସବାସ କରୁଥିବା ସତ୍ତ୍ୱେ ଦିଲ୍ଲୀରେ ଓଡ଼ିଆଙ୍କ ଉପସ୍ଥିତି ବାରି ହୁଏ ନାହିଁ । ଦିଲ୍ଲୀର ରାଜନୀତି, ବ୍ୟବସାୟ ବାଣିଜ୍ୟରେ ଓଡ଼ିଆଙ୍କର ଗୁରୁତ୍ୱ ନାହିଁ । ପ୍ରଶାସନ, ସାହିତ୍ୟ ସଂସ୍କୃତି କ୍ଷେତ୍ରରେ ଓଡ଼ିଆଙ୍କ ଭୂମିକା ସଂପର୍କରେ ଅବଶ୍ୟ ଦିଲ୍ଲୀର ଶିକ୍ଷିତବର୍ଗ କେତେକାଂଶରେ ସଚେତନ । ପ୍ରଶାସନରେ ଲଳିତେନ୍ଦୁ ମାନସିଂହ, ନୃତ୍ୟରେ ସୋନାଲ୍ ମାନସିଂହ, କବିତା ଦ୍ୱିବେଦୀ, ଚିତ୍ରକଳାରେ ଯତୀନ୍ ଦାସଙ୍କ ନାମ ଉଲ୍ଲେଖଯୋଗ୍ୟ । ଦିଲ୍ଲୀର ସାହିତ୍ୟ ପରିସରରେ ବେଶ୍ କେତେଜଣ ଓଡ଼ିଆଙ୍କ ନାମ ଚର୍ଚ୍ଚାକୁ ଆସେ – ଯେପରି ଜଗନ୍ନାଥ ପ୍ରସାଦ ଦାସ, ରମାକାନ୍ତ ରଥ, ସୀତାକାନ୍ତ ମହାପାତ୍ର, ମନୋଜ ଦାସ, ପ୍ରତିଭା ରାୟ ଇତ୍ୟାଦି । ଏମାନେ ଓଡ଼ିଆରେ ଲେଖନ୍ତି; ଏମାନଙ୍କ ଲେଖା ଇଂରାଜୀରେ ଉପଲବ୍ଧ । ରମାକାନ୍ତ ରଥ, ମନୋଜ ଦାସ ଓ ଜଗନ୍ନାଥ ପ୍ରସାଦ ସରସ୍ୱତୀ ସମ୍ମାନ ଲାଭ କରିଛନ୍ତି । ସୀତାକାନ୍ତ ମହାପାତ୍ର ଜ୍ଞାନପୀଠ ପୁରସ୍କାର । ରମାକାନ୍ତ ରଥ କେନ୍ଦ୍ର ସାହିତ୍ୟ ଏକାଡେମୀର ସଭାପତି ଥିଲେ; ସୀତାକାନ୍ତ ମହାପାତ୍ର ଥିଲେ ନ୍ୟାସନାଲ୍ ବୁକ୍ ଟ୍ରଷ୍ଟର ସଭାପତି । ତେବେ, ସାହିତ୍ୟ ବ୍ୟତୀତ କଳା ସମାଲୋଚନା କ୍ଷେତ୍ରରେ ମଧ୍ୟ ଜଗନ୍ନାଥ ପ୍ରସାଦଙ୍କର ସ୍ୱତନ୍ତ୍ର ପରିଚିତି ରହିଅଛି ।

ସର୍ବଭାରତୀୟ କ୍ଷେତ୍ରରେ ପରିଚିତ ଓଡ଼ିଆ କବି, ଲେଖକମାନଙ୍କ ମଧ୍ୟରେ ଜଗନ୍ନାଥ ପ୍ରସାଦଙ୍କ ସ୍ୱାତନ୍ତ୍ର୍ୟ – ସେ ଦିଲ୍ଲୀକୁ ହିଁ ଗ୍ରହଣ କରିନେଇଛନ୍ତି ତାଙ୍କ କର୍ମସ୍ଥଳ ଭାବରେ । କିଶୋରୀ ଚରଣ ଦାସ, ରମାକାନ୍ତ, ସୀତାକାନ୍ତ, ଦେବଦାସ ଛୋଟରାୟ, ହରପ୍ରସାଦ ଦାସଙ୍କ ଭଳି ଲେଖକ/କବିମାନେ ବୃତ୍ତିଗତ କାରଣରୁ ଦିଲ୍ଲୀରେ ଅବସ୍ଥାନ କରିଛନ୍ତି ଦୀର୍ଘ ସମୟ । କିନ୍ତୁ ଅବସର ପରେ ବାହୁଡ଼ି ଆସିଛନ୍ତି ନିଜ ରାଜ୍ୟ ଓଡ଼ିଶାକୁ । କଥାଶିଳ୍ପୀ ଚୌଧୁରୀ ହେମକାନ୍ତ ମିଶ୍ର ଅବଶ୍ୟ ସ୍ଥାୟୀଭାବରେ ବସବାସ କରୁଥିଲେ ଦିଲ୍ଲୀରେ ।

ପୁସ୍ତକ ଉନ୍ମୋଚନ, ଦିଲ୍ଲୀ ୨୦୦୧





ପୁସ୍ତକ ଉନ୍ମୋଚନ, ନୂଆଦିଲ୍ଲୀ, ଜାନକୀ ବଲ୍ଲଭ ପଟ୍ଟନାୟକ, ନରେନ୍ଦ୍ର କୁମାରଙ୍କ ସହ ୧୯୯୭

୨୦୦୬ରେ ତାଙ୍କର ଅକାଳରେ ପରଲୋକ ହୋଇଯାଇଛି । ଜଗନ୍ନାଥ ପ୍ରସାଦ ହରେକୃଷ୍ଣ ମହତାବଙ୍କ ଦ୍ୱାରା ପ୍ରତିଷ୍ଠିତ ଦିଲ୍ଲୀ ଓଡ଼ିଆ ସମାଜର ସଭାପତି ଥିଲେ । ହାଉଜ୍ ଖାସ୍ ଜଗନ୍ନାଥ ମନ୍ଦିରର ପରିଚାଳନାରେ ମଧ୍ୟ ସେ ସଂପୃକ୍ତ ରହି ଆସିଛନ୍ତି । ଦିଲ୍ଲୀବାସୀ ଓଡ଼ିଆମାନଙ୍କ ସାମାଜିକ ଓ ସାଂସ୍କୃତିକ କାର୍ଯ୍ୟକ୍ରମରେ ତାଙ୍କର ଅବଦାନ ଯଥେଷ୍ଟ । ଦିଲ୍ଲୀରେ ଓଡ଼ିଆ ତଥା ଭାରତୀୟ ଅନୁଷ୍ଠାନମାନଙ୍କରେ ତାଙ୍କର ଉପସ୍ଥିତି ଓ ଗୁରୁତ୍ୱ ସ୍ପଷ୍ଟ । 'ଇଣ୍ଡିଆନ୍ ଲିଟରେଚର୍'ର ପୂର୍ବତନ ସଂପାଦକ ନିର୍ମଳକାନ୍ତି ଭଟ୍ଟାଚାର୍ଯ୍ୟ ତଥା ବଙ୍ଗଳା ଭାଷାର ବିଶିଷ୍ଟ କବି ସୁବୋଧ ସରକାର ଏ ସଂପର୍କରେ ଉଲ୍ଲେଖ କରିଛନ୍ତି ।

ସପ୍ତମ ଦଶକର ଶେଷଯାଏ ଓଡ଼ିଆ ସାହିତ୍ୟର ଏକ ମୁଖ୍ୟ କେନ୍ଦ୍ର ଥିଲା କୋଲ୍‌କାତା । ଏହାପରେ ସେ ସ୍ଥାନ କେତେକାଂଶରେ ଗ୍ରହଣ କରିଛି ଦିଲ୍ଲୀ । କବି କୁନ୍ତଳା କୁମାରୀ ସାବତ୍ ଦିଲ୍ଲୀକୁ କର୍ମସ୍ଥଳ ଭାବରେ ଗ୍ରହଣ କରି ସେଠାରେ ତାଙ୍କର ସାହିତ୍ୟ ସାଧନା କରିଥିଲେ; ଚିକିତ୍ସା ବ୍ୟବସ୍ଥା ମଧ୍ୟ । ଏହି ପ୍ରତିଭାମୟୀ ମହିଳା ଅଠତିରିଶି ବର୍ଷ ଜୀବନକାଳରୁ (୧୯୦୦ – ୧୯୩୮) ଶେଷ ଦଶବର୍ଷ କଟାଇଥିଲେ ଦିଲ୍ଲୀରେ । ଦିଲ୍ଲୀକୁ ସାହିତ୍ୟ ସାଧନାର କର୍ମସ୍ଥଳୀଭାବରେ ଗ୍ରହଣ କରିବାରେ କୁନ୍ତଳା କୁମାରୀ ପ୍ରଥମ । ଜଗନ୍ନାଥ ପ୍ରସାଦଙ୍କୁ ତାଙ୍କର ସୁଯୋଗ୍ୟ ଉତ୍ତରାଧିକାରୀ କହିଲେ ଅପ୍ରାସଙ୍ଗିକ ହେବ ନାହିଁ ।



Dr. Harekrushna Mahtab

Phone : 53007
Ekamra Nivas
Bhubaneswar-751002
10/8/73.

My dear Jagannath,

Your letter dated the 9th June. Eastern Times was published this evening. The Governor inaugurated it. You may write on any subject relating to your research. I think this will be interesting to many readers. About your voluntary retirement, I do not know how your mind works. Will you work in some organisation or you will work independently. Certainly I have my blessings for whatever you do.

Yours sincerely,

(H.Mahtab)

Shri J.P.Das, IAS,
325, West Kidwai Nagar,
New Delhi - 110023.

ଜଗନ୍ନାଥ ପ୍ରସାଦଙ୍କ ପାଇଁ ଦିଲ୍ଲୀରେ ଓଡ଼ିଆ ଭାଷା ଓ ସାହିତ୍ୟର ପରିଚୟ ଓ ମର୍ଯ୍ୟାଦା ସୃଷ୍ଟି ହୋଇଛି, ଏହା କୁହାଯାଇପାରେ । ଯେଉଁ କବି, ଲେଖକ, ଚିତ୍ରଶିଳ୍ପୀମାନେ ଓଡ଼ିଶାରୁ ଦିଲ୍ଲୀ ଯାଆନ୍ତି, ସେମାନଙ୍କ ମଧ୍ୟରୁ ଅନେକେ ଜଗନ୍ନାଥ ପ୍ରସାଦଙ୍କ ଦର୍ଶନ ନ କଲେ ସେମାନଙ୍କର ଦିଲ୍ଲୀ ଯାତ୍ରା ଅପୂର୍ଣ୍ଣ ରହିଯାଏ ବୋଲି ମନେ କରନ୍ତି । (ହାଉଜ୍ ଖାସ୍‌ରେ ହିଁ ଦିଲ୍ଲୀର ସର୍ବବୃହତ୍ ଜଗନ୍ନାଥ ମନ୍ଦିରଟି ନିର୍ମିତ ହୋଇଥିବା ହୁଏତ ଆକସ୍ମିକତା ନୁହେଁ !) ଦିଲ୍ଲୀରେ ବସବାସ କରୁଥିବା ବିଭିନ୍ନ ଭାଷାଭାଷୀ ବହୁ କବି, ଲେଖକ, ଚିତ୍ରଶିଳ୍ପୀ, ସମାଜସେବୀଙ୍କ ସହିତ ଜଗନ୍ନାଥ ପ୍ରସାଦଙ୍କ ବନ୍ଧୁତା ଓ ସଂପର୍କ । ପୂର୍ବ ପରିଚ୍ଛେଦମାନଙ୍କରେ ତାହାର ସୂଚନା ପ୍ରଦାନ କରାଯାଇଛି । ଏମାନଙ୍କ ମଧ୍ୟରେ

ମୁଲ୍‌କରାଜ୍ ଆନନ୍ଦ, କେ.ଏନ୍. ଦାରୁୱାଲା (ଭାରତୀୟ ଇଂରାଜୀ କବି), ମୀନାକ୍ଷୀ ମୁଖାର୍ଜୀ ଓ ସୁଜିତ୍ ମୁଖାର୍ଜୀ (ଭାରତୀୟ ସାହିତ୍ୟର ସମାଲୋଚକ), ଯତୀନ ଦାସ (କଳାକାର), ରାଜେନ୍ଦ୍ର ଯାଦବ ଓ ମନୁ ଭଣ୍ଡାରୀ (ହିନ୍ଦୀ ସାହିତ୍ୟିକ), ମଧୁ କିଶ୍ୱର (ସମାଜସେବୀ ନାରୀବାଦୀ) ପ୍ରମୁଖ ଅନ୍ତର୍ଗତ । ଇଣ୍ଡିଆ ଇଣ୍ଟର୍‌ନ୍ୟାସ୍‌ନାଲ୍ ସେଣ୍ଟର୍, ଇଣ୍ଡିୟା ହାବିଟାଟ୍ ସେଣ୍ଟର୍ ଓ ପ୍ରେସ୍ କ୍ଲବ ଭଳି ଅନୁଷ୍ଠାନରେ ତ ନିୟମିତ ତାଙ୍କର ଭେଟ ହୁଏ ଦିଲ୍ଲୀର ବହୁ ଲେଖକ, କଳାକାର, ପ୍ରଶାସକ, ପ୍ରଭାବଶାଳୀମାନଙ୍କ ସହିତ ।

for J.P.
your [illegible], tenderness
nice seeing you again !
love
[signature]
7th Jan '74
N. Delhi

ଯତୀନ ଦାସ ୧୯୭୪

ତେବେ, ତାହାଠାରୁ ବଡ଼କଥା – ଓଡ଼ିଶାର ବିଭିନ୍ନ ଅଞ୍ଚଳର ତରୁଣ କବି, ଲେଖକ, ଚିତ୍ରଶିଳ୍ପୀ, କଳାକାରମାନଙ୍କୁ ସେ ଯେତିକି ଗୁରୁତ୍ୱ ଦିଅନ୍ତି, ସେତିକି ଗୁରୁତ୍ୱ ଦିଅନ୍ତି ଦିଲ୍ଲୀ ଦରବାରର ଏହି କୃତବିଦ୍ୟମାନଙ୍କୁ । ଏହି ଉକ୍ତିର ସତ୍ୟତା ପାଇଁ ଯେ କେହି ତାଙ୍କ ନିକଟକୁ ପତ୍ରଟିଏ ଲେଖନ୍ତୁ ଓ ସେ ତାହାର ଉତ୍ତର ଦେଉଛନ୍ତି କି ନା, ପରୀକ୍ଷା କରି ଦେଖନ୍ତୁ ।

ଜଗନ୍ନାଥ ପ୍ରସାଦଙ୍କ ଦିଲ୍ଲୀ ବାସଗୃହକୁ ପ୍ରଥମ ଥର ଯାଇଥିଲି ପ୍ରାୟ ତିରିଶି ବର୍ଷ ତଳେ । ସେତେବେଳେ ସେ ଥିଲେ ଦିଲ୍ଲୀର ଓଡ଼ିଶା ଭବନର ରେସିଡେଣ୍ଟ୍ କମିଶନର୍ ଓ ରହୁଥିଲେ ପଶ୍ଚିମ କିଦ୍‌ୱାଇ ନଗରରେ (ଏ ଠିକଣା ବୋଧହୁଏ କାହାରି କାହାରି ମନେ ଥିବ) । ମୁଁ ରହୁଥାଏ ଓଡ଼ିଶା ଭବନରେ । ହଠାତ୍ ମୋତେ ଫୋନ୍ କଲେ ତାଙ୍କ ସହ ଡିନର୍ ଖାଇବା ପାଇଁ । ମୁଁ ଆନନ୍ଦରେ ସମ୍ମତି ଦେଲି । ତା'ପରେ ତାଙ୍କର ପ୍ରଶ୍ନ 'ଆସିବ କେମିତି ?' 'କିଛି ଗୋଟାଏ ବ୍ୟବସ୍ଥା କରିବି', କହିଲି । ସେ କହିଲେ, 'ନା, ମୁଁ ତୁମକୁ ନେଇ ଆସିବି ।'

ଟାଇମ୍‌ସ୍ ଅଫ୍ ଇଣ୍ଡିଆ ୨ ଜାନୁଆରୀ ୧୯୮୪

## To Greener Pastures

TIME was when government service, especially in the prestigious IAS and IFS, was so coveted that many doing useful work in universities and the private sector grabbed every opportunity to get into the charmed circle. The traffic in the reverse direction which began some years ago is thus greatly to be welcomed though with one important reservation.

Some of the competent bureaucrats and diplomats have felt constrained to leave not because they felt that they had something more worthwhile to do in the groves of academe, research institutes or even the lucrative international institutions. They have quit because, in the inflamed political atmosphere since the mid-seventies, they have been needlessly pushed around.

Dr J. P. Das, the latest among the IAS officers to seek premature retirement, has done so, not because of any compulsion but out of choice. He belongs to the Orissa cadre and is at present his state's resident commissioner in New Delhi. His decision to retire 10 years ahead of schedule stems from a desire to devote his entire time to his literary and artistic pursuits.

During the last 25 years, while diligently doing a full-time job, Mr Das has written as many as 16 books, half of them in Oriya and the other half in English. His English works include "Puri Paintings", a research work on Pata paintings of Orissa.

ଫୋନ୍‌ରେ ଦିଲ୍ଲୀରେ ଜଣକୁ ନିମନ୍ତ୍ରଣ କରିବା ସହଜ, କିନ୍ତୁ ନିମନ୍ତ୍ରିତ ବ୍ୟକ୍ତିଟି ଠିକଣା ଖୋଜି ଗନ୍ତବ୍ୟସ୍ଥଳରେ ପହଞ୍ଚିବା ଆଦୌ ସହଜ ନୁହେଁ – ବିଶେଷତଃ ମୋ'ଭଳି ଯେଉଁମାନେ ଦିଲ୍ଲୀର ଭୂଗୋଳ ସହିତ ଖୁବ୍ ପରିଚିତ ନୁହନ୍ତି । ଯେ କୌଣସି କାର୍ଯ୍ୟର (ଚା' ପ୍ରସ୍ତୁତିଠାରୁ ପ୍ରୁଫ୍ ସଂଶୋଧନ ପର୍ଯ୍ୟନ୍ତ) ଟିକିନିଖି ଦିଗପ୍ରତି ଦୃଷ୍ଟି ଦେବା ଜଗନ୍ନାଥ ପ୍ରସାଦଙ୍କର ବିଶେଷତ୍ୱ । ଦିଲ୍ଲୀ ସହିତ ଅପରିଚିତ ଜଣେ ଅଧ୍ୟାପକ ତାଙ୍କ ବାସଗୃହ ଖୋଜି ବାହାର କରିବା ଅପେକ୍ଷା, ସେ ନିଜେ କାର୍‌ରେ ଅଧ୍ୟାପକଙ୍କୁ ନିଜ ଗୃହକୁ ନେଇ ନ ଯିବେ କାହିଁକି ଓ ଡିନର୍ ପରେ ଓଡ଼ିଶା ଭବନରେ ଛାଡ଼ି ନ ଦେବେ କାହିଁକି ? ଏଭଳି ସହାନୁଭୂତି ଖୁବ୍ କମ୍ ଉଚ୍ଚପଦସ୍ଥ ଅଫିସରଙ୍କଠାରୁ ଆଶା କରାଯାଏ ।

ଜଗନ୍ନାଥ ପ୍ରସାଦଙ୍କ ବହୁ ବଂଧୁ, ସତୀର୍ଥ, ସମାଲୋଚକ ତାଙ୍କ ସଂପର୍କରେ ଯାହା ଲେଖିଛନ୍ତି ବା କହିଛନ୍ତି, ତାହାର କେତେକାଂଶ ଉଦ୍ଧାର କରାଯାଇଛି ଏ ଗ୍ରନ୍ଥରେ । କିନ୍ତୁ ତାଙ୍କର ମାତା ଇନ୍ଦୁ ଦେବୀଙ୍କ ସଂପର୍କରେ କେହି କିଛି ଉଲ୍ଲେଖ କରି ନାହାନ୍ତି । ତେବେ, ମୋର ଜଣେ ବଂଧୁ, ବାଣପୁର କଲେଜରେ ଅବସରପ୍ରାପ୍ତ ଅଧ୍ୟକ୍ଷ ରଙ୍ଗନାଥ ହୋତା ଜଗନ୍ନାଥ ପ୍ରସାଦଙ୍କ ମା'ଙ୍କ ସଂପର୍କରେ କହନ୍ତି :



[illegible] February [illegible]

Dear Mr Das

Many thanks for your letter of [illegible] February.

I was sorry to have missed you in Delhi. I had wanted to meet you, at the suggestion of Pupul Jayakar, to talk about the Calico Museum, for which I act as a curatorial consultant for two months in the year. Pupulben thought that you would be a good person to get interested, since we are both concerned about its long-term future and the shortage of directorial talent. [illegible]

Yours sincerely,

John Irwin

'୧୯୪୯ ଜୁଲାଇରୁ ୧୯୫୭ ମାର୍ଚ୍ଚ ବେଳର କଥା – ମୁଁ ଗୋଟିଏ ନଅ ବର୍ଷର ପିଲା – ବାଣପୁର ହାଇସ୍କୁଲ୍ (ବର୍ତ୍ତମାନର ଗୋଦାବରୀଶ ବିଦ୍ୟାପୀଠ)ର ଚତୁର୍ଥ ଶ୍ରେଣୀ ଛାତ୍ର ଭାବରେ ଗାଁ'ରୁ ୩ କିଲୋମିଟର କାଦୁଅ ପଙ୍କ ରାସ୍ତାରେ ପ୍ରତିଦିନ ଯିବା ପରେ ସଡ଼କ ପଡ଼େ । ସଡ଼କରେ ପ୍ରାୟ ଅଧ କିଲୋମିଟର ଯିବା ପରେ ସ୍କୁଲ୍ । ରୋଡ଼ରେ ପହଞ୍ଚୁ ପହଞ୍ଚୁ ଶ୍ରୀଧର ବାବୁଙ୍କ ଘର । ଆମ ଗାଁ'ର ସେତେବେଳକୁ ଛଅସାତଜଣ ପିଲା ସେହି ସ୍କୁଲ୍‌ରେ ପଢୁ । ଆମ ଭିତରେ ସବୁଠୁ ବଡ଼ ପିଲାଟି ଭଗବାନ ହୋତା ଯେ କି ଆମ ଗାଁ'ର ପ୍ରଥମ ମାଟ୍ରିକ୍ୟୁଲେଟ୍ । ସେ ଶ୍ରୀଧର ବାବୁଙ୍କ ବଡ଼ପୁଅ ଜଗନ୍ନାଥ ପ୍ରସାଦଙ୍କ କ୍ଲାସ୍‌ମେଟ୍ । ତାଙ୍କର ମଝିଆଁ ପୁଅ କୃଷ୍ଣପ୍ରସାଦ ମୋ ମାଉସୀପୁଅ ଭାଇଙ୍କ କ୍ଲାସ୍‌ମେଟ୍ ଏବଂ ତାଙ୍କର ସାନପୁଅ ରଘୁନାଥ ପ୍ରସାଦ ମୋ ତଳ କ୍ଲାସ୍‌ରେ ପଢୁଥିଲେ । ଶ୍ରୀଧର ବାବୁ ସେତେବେଳେ କଟକ ଖ୍ରୀଷ୍ଟ କଲେଜର ଅଧ୍ୟାପକ ଏବଂ ତାଙ୍କର ବଡ଼ପୁଅ ତାଙ୍କ ସହିତ କଟକରେ ରହୁଥାନ୍ତି ।

'ଆମେ ଗାଁ'ରୁ ଯିବା ଆସିବା କରିବା ବେଳେ ଅଚାନକ ବର୍ଷା ହେଲେ ଶ୍ରୀଧର ବାବୁଙ୍କ ଘର ବାରଣ୍ଡାରେ ଆଶ୍ରୟ ନେଉ । ଏଭଳି ୮ ବର୍ଷ ଭିତରେ କେତେଥର ଯେ ଆମେ ସେ ବାରଣ୍ଡାରେ ଆଶ୍ରୟ ନେଇଛୁ, ତାହା କହି ହେବ ନାହିଁ । ଆମମାନଙ୍କ ଦୃଷ୍ଟିରେ ସେଇଟି ଗୋଟିଏ ବଡ଼ ଲୋକଙ୍କ ଘର । ଶ୍ରୀଧର ବାବୁଙ୍କ ସ୍ତ୍ରୀ ଶ୍ରୀମତୀ ଇନ୍ଦୁ ଦେବୀ ଆମର ମାଆ ଭଳି । ତାଙ୍କ ବିଷୟରେ ଆମ ସମସ୍ତଙ୍କର ବହୁତ ଉଚ୍ଚ ଧାରଣା । ସେ ଦେଖିବାକୁ ଅତି ସାଧାରଣ – କିନ୍ତୁ ବ୍ୟବହାର ଏବଂ କଥାବାର୍ତ୍ତାରେ ବହୁତ ସମ୍ଭ୍ରାନ୍ତ ଏବଂ ସ୍ନେହୀ । କେତେବେଳେ ହେଲେ ଉଚ୍ଚ ସ୍ୱରରେ କଥା କୁହନ୍ତି ନାହିଁ । ଆମକୁ ବେଳେବେଳେ ଭଲମନ୍ଦ ପଚାରନ୍ତି – 'ତୁମେ କେଉଁ କ୍ଲାସ୍‌ରେ ପଢୁଛ ? ଆଜି କାହିଁ ଛତା ଆଣିଲ ନାହିଁ ? କେତେବେଳେ ଖାଇଥିଲ ? ଖେଳଛୁଟିରେ ଜଳଖିଆ ଖାଇଥିଲ କି ?' ଇତ୍ୟାଦି ଇତ୍ୟାଦି । ବହୁବର୍ଷର ବ୍ୟବଧାନରେ ମଧ୍ୟ ସେହି ପଦେ ଅଧେ ଅମୃତମୟ କଥା ଏବଂ ସ୍ନେହପୂର୍ଣ୍ଣ ଆଚରଣ ଭୁଲି ହୁଏ ନାହିଁ । ତାଙ୍କର ସୁନ୍ଦର ବ୍ୟବହାର ଏବଂ ଶ୍ରଦ୍ଧାଶୀତଳ କଥା ଆମର ଭୋକ ଏବଂ ପଥଶ୍ରମ ଲାଘବ କରିଦିଏ । ଆମେ ପରେ ତାଙ୍କର ବଡ଼ପୁଅଙ୍କ ବିରାଟ ବ୍ୟକ୍ତିତ୍ୱ ବିଷୟରେ ଜାଣିଲୁ । ଶ୍ରୀଧର ଦାସ ଖ୍ରୀଷ୍ଟ କଲେଜରେ ମୋର ୪ବର୍ଷର ଅଧ୍ୟାପକ, ତାଙ୍କର ମଝିଆଁ ପୁଅ ଆମର ୩ କ୍ଲାସ ଉପରେ; ତାଙ୍କ ସାନପୁଅ ମୋର ତଳ କ୍ଲାସ୍‌ରେ । ଏମାନଙ୍କୁ ସମସ୍ତଙ୍କୁ ଅପେକ୍ଷାକୃତ ଘନିଷ୍ଠଭାବରେ ଜାଣିବାରେ ଆଶ୍ଚର୍ଯ୍ୟ ଲାଗେ – ସେହି ଭଦ୍ରମହିଳା ହିଁ ଏମାନଙ୍କର କେନ୍ଦ୍ରବିନ୍ଦୁ ଏବଂ ପ୍ରେରଣାର ଉତ୍ସ ।'

ବୋଉ



ଜନନୀ ଇନ୍ଦୁ ଦେବୀଙ୍କର ଏହି ସ୍ନେହ ଓ ଭଲପଣିଆ ଦ୍ୱାରା ନିଶ୍ଚିତଭାବରେ ପ୍ରଭାବିତ ଜଗନ୍ନାଥ ପ୍ରସାଦଙ୍କ ବ୍ୟକ୍ତିତ୍ୱ – ତାଙ୍କର ବଂଧୁବତ୍ସଳତା, ସାଧାରଣ ମଣିଷ ପ୍ରତି ଦରଦ ଓ ପ୍ରତିବଦ୍ଧତା । ତାଙ୍କର ମା'ଙ୍କର ପତ୍ରଟିଏ ଦେଖନ୍ତୁ :

'ସ୍ନେହର ଜଗନ,

ତୋ ଦେହ କିପରି ଅଛି ଲେଖିବୁ । କେତେଆଡ଼େ ଯାଉଛୁ ସବୁଠାରୁ ଫଟ ଆଣିଥିବୁ ପଠାଇବୁ । ଆଠ ଦିନରେ ଖଣ୍ଡେ ଚିଠି ଦେଉଥିବୁ । ତତେ ଦେଖିଲା ପରି ଲାଗୁଥିବ । ଅନେକ ଦିନ ହେଲା ଚିଠି ନ ପାଇ ମନ ବହୁତ ଖରାପ ହେଉଛି । ଆଶା କରେ ଭଲରେ ଥିବୁ । ଝିଅ ପେଟାଉଛି । ହସୁଛି । ଶୀଘ୍ର ଚିଠି ଦେବୁ ।

ଇତି ତୋର ବୋଉ ।'

ସବୁ ମାଆ ତ ପୁଅଙ୍କ ନିକଟକୁ ଏପରି ପତ୍ର ଲେଖନ୍ତି । ତଥାପି ଏପରି ଲିଖିତ ପ୍ରତି ପତ୍ରର ଭାଷା, ଭାବ ମନେହୁଏ ଅନନ୍ୟ, ଅମଳିନ । ଜଗନ୍ନାଥ ପ୍ରସାଦଙ୍କ ଭଳି ସୁପୁତ୍ରଙ୍କ ଜନନୀଙ୍କୁ ସମ୍ମାନ ଜଣାଇବା ପାଇଁ ଏ ପତ୍ରଟିର ଅବତାରଣା ।


ମୋନା ୧୯୬୫

'ଜଗନ୍ନାଥ ପ୍ରସାଦ : ସୃଜନ ଯାତ୍ରା' ଗ୍ରନ୍ଥର କୌଣସି ଉପସଂହାର ନାହିଁ । କାରଣ, ଜଗନ୍ନାଥ ପ୍ରସାଦ ବର୍ତ୍ତମାନ ସୁଦ୍ଧା ସଂପୂର୍ଣ୍ଣ କର୍ମଠ, ସାହିତ୍ୟ ରଚନାରେ ବ୍ୟାପୃତ । ତାଙ୍କର ସାଧନାର ଧାରା ଅବିଚଳିତ ଓ ଗତିଶୀଳ । ତାଙ୍କ ଜୀବନଯାତ୍ରା ଆରମ୍ଭ ହୋଇଥିଲା ବାଣପୁରରୁ – ସେଠାରୁ କଟକ, ଆହ୍ଲାବାଦ, ଦିଲ୍ଲୀ ।

ଦିଲ୍ଲୀରେ ମଧ୍ୟ ଅଟକି ଯାଇ ନାହିଁ ଜଗନ୍ନାଥ ପ୍ରସାଦଙ୍କ ଜୀବନଯାତ୍ରା ଓ ସୃଜନଶୀଳତା । ତାଙ୍କର ଏକମାତ୍ର କନ୍ୟା ମୋନାଲିସା ଘଟଣାକ୍ରମେ ଆମେରିକାରେ ବସବାସ କରୁଛନ୍ତି ତାଙ୍କ ଜାପାନୀ ସ୍ୱାମୀ ଓ ଦୁଇଟି କନ୍ୟାଙ୍କ ସହିତ । ଜଗନ୍ନାଥ ପ୍ରସାଦ ବାହାର ଦୁନିଆକୁ ଦୃଶ୍ୟ ହୁଅନ୍ତି ଉଚ୍ଚ ବ୍ୟକ୍ତିତ୍ୱର ଅଧିକାରୀ, ପ୍ରମୁଖ କବି, ଲେଖକ ତଥା କଳା ସମାଲୋଚକ ଭାବରେ । ମାତ୍ର ତାଙ୍କ କନ୍ୟାଙ୍କ ଦୃଷ୍ଟିରେ ସେ ଜଣେ ଆଦର୍ଶ ପିତା; ନାତୁଣୀମାନଙ୍କ ଦୃଷ୍ଟିରେ ଜଣେ କୌତୁକିଆ ଅଜା । ତାଙ୍କ ସଂପର୍କରେ ତାଙ୍କର କନ୍ୟା ଓ ନାତୁଣୀମାନେ ଯାହା କହନ୍ତି, ସେଥିରୁ ତାଙ୍କ ବ୍ୟକ୍ତିତ୍ୱ ଓ ଜୀବନର ଅନ୍ତଃରୂପଟି ବୁଝିହୁଏ, ଯେପରି :

ହିନା ୨୦୦୦


ମୋନା ଦାସ (ଝିଅ)

'ମୁଁ ଛୋଟ ଥିଲାବେଳେ ବି ବାପା ମୋ'ସହିତ ସାଙ୍ଗପରି ବ୍ୟବହାର କରୁଥିଲେ । ସବୁକଥା ମୋତେ ଖୋଲାଖୋଲି କହୁଥିଲେ । ମୁଁ ଯେମିତି ଥିଲି ତାଙ୍କ ସଙ୍ଗେ ସମାନ ।



ମୋନା ଓ ମିତ୍ରା ୧୯୮୭

ମୋ' ସାଙ୍ଗମାନଙ୍କର ସେ ଖୁବ୍ ପ୍ରିୟ ଥିଲେ । ଅନ୍ୟମାନଙ୍କର ବାପା ମା'ଙ୍କ ପରି ସେ ନ ଥିଲେ । ଏବେ ବି ମୋ'ସାଙ୍ଗମାନେ କୁହନ୍ତି, ସବୁ ବାପା ମା' ତାଙ୍କରି ପରି ହେବା ଉଚିତ । ସେ ଆମକୁ ଖୁବ୍ ହସାଉଥିଲେ । ସବୁ ବୟସର ଲୋକଙ୍କୁ ମଜାମଜା କଥା କହୁଥିଲେ । ବେଳେବେଳେ ନିଜେ ବୋକାଙ୍କ ପରି କାମ କରି ଅନ୍ୟମାନଙ୍କୁ ହସାଉଥିଲେ । ଅନ୍ୟ ଲୋକମାନଙ୍କୁ ବ୍ୟଙ୍ଗ କରୁଥିଲେ । ବିଭିନ୍ନ କାମ କରିବା ପାଇଁ ମୋତେ ଉତ୍ସାହ ଦେଉଥିଲେ । ନିଜେ ଭଲ ସିନେମାଟିଏ ଦେଖିଲେ ତାହା ଦେଖିବା ପାଇଁ ମୋତେ କହୁଥିଲେ । ମୋ' ଜୀବନରେ ଅନେକ କଥା ଜାଣିବା, ଅନେକ କିଛି ଅନୁଭବ କରିବା ବାପାଙ୍କ ପାଇଁ ସମ୍ଭବ ହୋଇଛି । କିଛି କରିବା ପାଇଁ ମୋତେ ବାଧ କରୁ ନ ଥିଲେ; ମୋ'ଠାରୁ କିଛି ଆଶା ବି କରୁ ନ ଥିଲେ । ମୁଁ ଯାହା କଲେ ସେଥିରେ ତାଙ୍କର ସମ୍ମତି ଥିଲା । ମୁଁ ଯେତେବେଳେ ଜଣେ ଅଣଭାରତୀୟଙ୍କୁ ବିବାହ କରିବାକୁ ସ୍ଥିର କଲି, ମୁଁ ଠିକ୍ କରୁ ନାହିଁ ବୋଲି ସେ କେବେ ମୋତେ କହି ନ ଥିଲେ । ମୋତେ ଖୁବ୍ ଭଲ ପାଉଥିଲେ, ମୋର ଯତ୍ନ ନେଉଥିଲେ, ତାଙ୍କ ସାଙ୍ଗେ ମୋର କେବେ ମନର ଅମେଳ ହୋଇ ନ ଥିଲା । ଜୀବନରେ ଯାହା ଘଟୁଥିଲା, ତାହା ସେ ସ୍ୱାଭାବିକଭାବରେ ଗ୍ରହଣ କରି ନେଉଥିଲେ । ସେଇଥିପାଇଁ ତାଙ୍କ ସହିତ ଚଳିବା ଖୁବ୍ ସହଜ ।

ମୋ' ଝିଅମାନଙ୍କର ସେ ଖୁବ୍ ପ୍ରିୟ ଅଜା । ସେ ଯେମିତି ତାଙ୍କରି ବୟସର ଜଣେ ସାଙ୍ଗ । କୌଣସି କାମକୁ ସେ ଗଡ଼ାଇ ଦିଅନ୍ତି ନାହିଁ । ସବୁକାମ ଠିକ୍ ସମୟରେ କରନ୍ତି । ସବୁକଥାରେ ନିୟମିତ ଓ ଶୃଙ୍ଖଳିତ । ଏମିତିକି ମୋର ସବୁ ପରୀକ୍ଷାରେ ରିପୋର୍ଟ୍ କାର୍ଡ୍ ଓ ପିଲାଦିନେ ମୁଁ ଲେଖିଥିବା ଚିଠିସବୁ ସେ ସାଇତି ରଖିଥିଲେ; ଏବେ ମୋ' ପିଲାମାନଙ୍କୁ ସେସବୁ ଦେଇଛନ୍ତି ।

ତାଙ୍କ ବିଷୟରେ ଗୋଟିଏ ବଡ଼କଥା ହେଲା – ଘର କାମରେ ସେ ଧୁରନ୍ଧର । ସେ ସବୁବେଳେ କାମରେ ବ୍ୟସ୍ତ ରହିବାକୁ ଚାହାନ୍ତି । କୌଣସି କାମକୁ ଛୋଟ ବୋଲି ଭାବନ୍ତି ନାହିଁ । ସେ କ'ଣ ଯେ ଜାଣନ୍ତି ନାହିଁ, ଭାବିବା କଠିନ । ରୋଷେଇ, ସିଲେଇ, ଲୁଗାପଟା ଇସ୍ତ୍ରୀ କରିବା – ସବୁ ତାଙ୍କୁ ଜଣା ।

ଆଉ ଗୋଟିଏ କଥା ହେଉଛି, ସବୁଥିରେ ସେ ସିଧା ଓ ସଳଖ । ସେଥିପାଇଁ ତାଙ୍କୁ ବୁଝିବାରେ କିଛି ଅସୁବିଧା ନାହିଁ । ଏହିସବୁ ଗୁଣ ପାଇଁ ତାଙ୍କ ସମୟରେ ସେ ଜଣେ ଅନନ୍ୟ ବ୍ୟକ୍ତି । ସେ ଯେପରି ଚାହିଁଛନ୍ତି, ସେହିପରି ଜୀବନ ବିତାଇଛନ୍ତି । କେତେଜଣ ଏପରି କରିପାରନ୍ତି !'

ସାଚି (ନାତୁଣୀ, ଚଉଦ ବର୍ଷ)





ହିନା ଓ ସାଚି ୨୦୦୭

'ଅଜାଙ୍କୁ ମୁଁ ଡାକେ 'ବୁଜା' । କେମିତି କେଜାଣି ଅତି ଛୋଟ ଥିବାବେଳେ ଅଜାଙ୍କୁ ଭୁଲ୍‌ରେ 'ବୁଜା' ବୋଲି ଡାକୁଥିଲି । ସେଇ ଅଭ୍ୟାସ ରହିଯାଇଛି । ସେ ଏ ପୃଥିବୀର ସବୁଠାରୁ ଭଲ ଅଜା । ମୋତେ ଖୁବ୍ ଭଲ ପାଆନ୍ତି, ମୋର ଯତ୍ନ ନିଅନ୍ତି । ସେ ବି ଭାରି ଚାଲାକ୍ ଓ କୌତୁକିଆ । ପ୍ରତିବର୍ଷ ଖରାଦିନେ ସେ ଆମେରିକା ଆସନ୍ତି । ଆମେ ତାଙ୍କ ଆସିବା ପାଇଁ ଅପେକ୍ଷା କରିଥାଉ । ବୁଜା ଆସିଲେ ଆମର ଭାରି ମଜା ହୁଏ; ତାଙ୍କ ସାଙ୍ଗେ ଆମେ ବହୁତ ସମୟ କଟାଉ । ଆମକୁ ଲାଗେ, ସେ ଆମରି ବୟସର – ଆମ ସାଙ୍ଗେ ସବୁକଥା କରନ୍ତି । ଆମ ସଙ୍ଗେ ରାନ୍ଧନ୍ତି, ଆମ ସଙ୍ଗେ ଖେଳନ୍ତି । ରାତିରେ ବୁଜା ମୋତେ ଓ ମୋ' ସାନଭଉଣୀକୁ ବଢ଼ିଆ ଗପ ଓ ଥଟ୍ଟା କଥା କହନ୍ତି । ଏମିତି କହୁ କହୁ ବହୁତ ରାତି ହୋଇଯାଏ । ସେ ଖୁବ୍ ସରଳ ମଣିଷ । ସେ ଯେ ଜଣେ ଏତେବଡ଼ ଲେଖକ, ମୁଁ ଜାଣିପାରେ ନାହିଁ । ବଡ଼ ହେଲେ ମୁଁ ତାଙ୍କର ସବୁ ବହି ପଢ଼ିବି ।'

ହିନା (ନାତୁଣୀ, ଦଶବର୍ଷ)

'ମୁଁ ବୁଜାଙ୍କୁ ଖୁବ୍ ଭଲପାଏ । ସେ ମୋ'ସଙ୍ଗେ ଖେଳନ୍ତି ଓ ସବୁ କାମରେ ମୋତେ ସାହାଯ୍ୟ କରନ୍ତି । ମୋତେ ଅନେକ କଥା ଶିଖାନ୍ତି । ଭଲ ଭଲ କଥା କହନ୍ତି; କେମିତି ଦୁଷ୍ଟାମି କରିବାକୁ ପଡ଼ିବ ତାହା ବି ବତାଇ ଦିଅନ୍ତି । ମୋ'ମନରେ କଷ୍ଟ ହେଲେ ତାହା ଭୁଲାଇ ଦିଅନ୍ତି । ମୋ'ସଙ୍ଗେ ଥଟ୍ଟା କରନ୍ତି ଓ ମୋତେ ନୂଆ ନୂଆ ଜାଗାକୁ ବୁଲାଇ ନିଅନ୍ତି । ଖରାଦିନେ ସେ ଆମ ଘରକୁ ଆସିଲେ ଆମେ ଏକାଠି ଖାଉ, ଶୋଉ ଓ ଖେଳୁ । ତାଙ୍କ ପରି କୌତୁକିଆ ମଣିଷ ମୁଁ ଆଉ ଦେଖି ନାହିଁ । ଯାହା କିଛି ବିଗିଡ଼ି ଗଲେ ସେ ସଜାଡ଼ି ଦିଅନ୍ତି ।'

---

# ଜଗନ୍ନାଥ ପ୍ରସାଦଙ୍କ କୃତି

## କବିତା

| | | |
|---|---|---|
| ୧. | ପ୍ରଥମ ପୁରୁଷ | ୧୯୭୧ |
| ୨. | ଅନ୍ୟସବୁ ମୃତ୍ୟୁ | ୧୯୭୬ |
| ୩. | ଯେ ଯାହାର ନିର୍ଜନତା | ୧୯୭୯ |
| ୪. | ଅନ୍ୟ ଦେଶ ଭିନ୍ନ ସମୟ | ୧୯୮୨ |
| ୫. | ଯାତ୍ରାର ପ୍ରଥମ ପାଦ | ୧୯୮୮ |
| ୬. | ଆହ୍ନିକ | ୧୯୯୦ |
| ୭. | ସ୍ଥିରଚିତ୍ର | ୧୯୯୧ |
| ୮. | ସଚରାଚର | ୧୯୯୪ |
| ୯. | ସ୍ମୃତିର ସହର | ୧୯୯୫ |
| ୧୦. | ପରିକ୍ରମା | ୧୯୯୮ |
| ୧୧. | ଅସମୟ | ୨୦୦୪ |

## ନାଟକ

| | | |
|---|---|---|
| ୧. | ସୂର୍ଯ୍ୟାସ୍ତ ପୂର୍ବରୁ | ୧୯୭୭ |
| ୨. | ସବା ଶେଷ ଲୋକ | ୧୯୮୦ |
| ୩. | ଅସଂଗତ ନାଟକ | ୧୯୮୧ |
| ୪. | ପୂର୍ବଭାଗ | ୧୯୮୩ |
| ୫. | ସୁନ୍ଦର ଦାସ | ୧୯୯୩ |
| ୬. | ରଙ୍ଗଲିପି | ୧୯୯୭ |

## ଉପନ୍ୟାସ

| | | |
|---|---|---|
| ୧. | ଦେଶ କାଳ ପାତ୍ର | ୧୯୯୨ |

## ଶିଶୁ ସାହିତ୍ୟ

| | | |
|---|---|---|
| ୧. | ଆଳିମାଳିକା | ୧୯୯୩ |
| ୨. | ଆଲୁକୁଚି ମାଲୁକୁଚି | ୧୯୯୩ |
| ୩. | ଅନାବନା | ୨୦୦୮ |

## ଅନୁବାଦ

| | | |
|---|---|---|
| ୧. | ସ୍ୱପ୍ନ ବିଚାର | ୨୦୦୦ |

## ସଂକଳନ

| | | |
|---|---|---|
| ୧. | ପ୍ରେମ କବିତା | ୧୯୯୧ |
| ୨. | ଶ୍ରେଷ୍ଠ କବିତା | ୧୯୯୩ |
| ୩. | ପୂର୍ବାପର-୧ (ସମଗ୍ର କବିତା ୧୯୭୦-୭୯) | ୧୯୯୫ |
| ୪. | ପୂର୍ବାପର-୨ (ସମଗ୍ର କବିତା ୧୯୮୦-୯୪) | ୧୯୯୬ |

## ଗଳ୍ପ

| | | |
|---|---|---|
| ୧. | ଭବନାଥ ଓ ଅନ୍ୟମାନେ | ୧୯୮୨ |
| ୨. | ଦିନଚର୍ଯ୍ୟା | ୧୯୮୩ |
| ୩. | ଆମେ ଯେଉଁମାନେ | ୧୯୮୬ |
| ୪. | ଛଅଟି ଝିଅ | ୧୯୮୭ |
| ୫. | ସାକ୍ଷାତ୍‌କାର | ୧୯୮୭ |
| ୬. | ପ୍ରିୟ ବିଦୂଷକ | ୧୯୯୨ |
| ୭. | ଶେଷ ପର୍ଯ୍ୟନ୍ତ | ୧୯୯୫ |
| ୮. | ଇଚ୍ଛାପତ୍ର | ୨୦୦୦ |
| ୯. | କଥାଯାତ୍ରା | ୨୦୦୦ |
| ୧୦. | ଇନ୍ଦ୍ରଧନୁ, ଆଖି ଓ କବିତାର ଦୀର୍ଘଜୀବନ | ୨୦୦୯ |

ଜଗନ୍ନାଥ ପ୍ରସାଦ ଦାସ
Dr. J.P. Das
305 Hauz Khas Apartments
New Delhi–110 016
Tel : +91 11 2651 1673
email : prathampurush@gmail.com

ସାଂପ୍ରତିକ ଓଡ଼ିଶାର ତଥା ଭାରତର
ସାହିତ୍ୟ ଓ କଳା ସମାଲୋଚନା କ୍ଷେତ୍ରରେ
ଜଗନ୍ନାଥ ପ୍ରସାଦ ଦାସ ଏକ ପ୍ରମୁଖ ବ୍ୟକ୍ତିତ୍ୱ ।

ଏ ପୁସ୍ତକ ଜଗନ୍ନାଥ ପ୍ରସାଦଙ୍କ କୃତିର ଗଭୀର ଆକଳନ ନୁହେଁ;
ତଥ୍ୟଭିତ୍ତିକ ଜୀବନୀ ମଧ୍ୟ ନୁହେଁ;
ତାଙ୍କର ଜୀବନ ଓ କୃତି ମଧ୍ୟରେ ନିହିତ ସଂପର୍କର
ଏକ ସୂଚନା ମାତ୍ର ।

ଏ ପୁସ୍ତକର ଲେଖକ ଜଣେ - କିନ୍ତୁ କେବଳ ଜଣେ ନୁହେଁ ।
ଜଗନ୍ନାଥ ପ୍ରସାଦଙ୍କ ସଂପର୍କରେ
ତାଙ୍କର ପିତା, ଶିକ୍ଷକ, ପ୍ରବୀଣ ଓ ତରୁଣ ବଂଧୁମାନଙ୍କ
ଲିଖିତ ବା ବାଚନିକ ଆଲୋଚନାର କିୟଦଂଶ
ଏଥିରେ ଲିପିବଦ୍ଧ ହୋଇଛି;
ସମସ୍ତଙ୍କ ମିଳିତ ଉଦ୍ୟମ ଏ ପୁସ୍ତକ ।

ଗଣେଶ୍ୱର ମିଶ୍ର ପ୍ରତିଷ୍ଠିତ ଓଡ଼ିଆ ଲେଖକ ଓ ଅନୁବାଦକ


ISBN 81-7411-785-7
9788174117854